ଓଁ ଜୟଗୁରୁ

ଜୟଗୁରୁ ପ୍ରତିଷ୍ଠାନର ଚତୁର୍ଦ୍ଦଶ ଅବଦାନ

# ହଂସଦୂତ

(ପରମବୈଷ୍ଣବ ଶ୍ରୀଶ୍ରୀରୂପଗୋସ୍ୱାମିବିରଚିତ)

ବିରହ-ବାନ୍ଧବୀ (କବିତା)
ମିଳନ-ମାଧୁରୀ (କାବ୍ୟ)
ରତ୍ନ-ରେଣୁ (ଅନୁବାଦ)
ପଲ୍ଲୀ-ପ୍ରୀତି (କବିତା)
ଋତୁସଂହାର (ଅନୁବାଦ)
ନୀତି-ନିର୍ଝରିଣୀ (ଅନୁବାଦ)
ସତୀର ଶକ୍ତି (କାବ୍ୟ)
ସଟୀକ ଯମକରାଜ ଚଉତିଶା (ଟୀକା ସଙ୍କଳନ)
ଗୀତଗଣିତ (ସଙ୍ଗୀତ)
ଅଞ୍ଜଳି (ବୈଭାଷିକ ଅନୁବାଦ)
ମଣିରତ୍ନମାଳା (ଅନୁବାଦ) ଓ
ତିଳତଣ୍ଡୁଳ (କବିତା) ର

ଲେଖକ

ବରେଣ୍ୟକବି ଶ୍ରୀ ବିଶ୍ୱନାଥ କର, ବି. ଏ., କୋବିଦ

ପ୍ରକାଶକ—**ଜୟଗୁରୁ ପ୍ରତିଷ୍ଠାନ**
ଗ୍ରାମ, ପୋ: ଅ: ଚଉଦ୍ୱାର
ଜିଲ୍ଲା—କଟକ

ପ୍ରଥମ ମୁଦ୍ରଣ—ଏକ ହଜାର
ପ୍ରକାଶ—ଝୁଲଣ ପୂର୍ଣ୍ଣିମା (୧୨-୮-୭୫)


ମୂଲ୍ୟ ଏକଟଙ୍କା

ପ୍ରାପ୍ତିସ୍ଥାନ—
ଜୟଗୁରୁ ପ୍ରତିଷ୍ଠାନ ଚଉଦ୍ୱାର
ଓ
ବିଦ୍ୟାପୁରୀ, ବାଲୁବଜାର, କଟକ-୨

# ଗୁରୁବନ୍ଦନା

ଗୁରେ ! ଶିଷ୍ୟସ୍ତେଽହଂ ପରମକୃପୟା ପାଳିତବପୁଃ
ମୟା ଜ୍ଞାନାମ୍ଭୋଧେରୁପଲମିବ ଲବ୍‌ଧଂ କୃତପଥେ ।
ତ୍ୱଦୀୟାଶୀର୍ବାଦାଦ୍ଧନଜନପଟଶାଭୈର୍ବିଲସିତା
ସଦାଭୂୟାଦ୍ ଭୃଙ୍ଗୀ ପଦକମଳୟୋସ୍ତେ, ମମ ମନଃ ।

ତ୍ୱଦ୍‌ଭକ୍ତରଞ୍ଜିତାନ୍ତରସ୍ୟ
ବିଶ୍ୱନାଥସ୍ୟ

---

ମୋର ପିତାମହ ତଥା ବାଲ୍ୟଗୁରୁ ସ୍ୱର୍ଗତ କୃପାସିନ୍ଧୁ କରଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟ—

# ପଞ୍ଚାମୃତମ୍

* ସୁଭାଷିତେନ କାବ୍ୟେନ ଯୁବତୀନାଂ ଚ ଲୀଳୟା
ମନୋ ନ ରମତେ ଯସ୍ୟ ସ ଯୋଗୀ ହ୍ୟଥବା ପଶୁଃ ।

* ତୟା କବିତୟା କିମ୍ବା ତୟା ବନିତୟା ତଥା
ପଦବିନ୍ୟାସମାତ୍ରେଣ ଯୟା ନାପହୃତଂ ମନଃ ।

* ସଂସାର ବିଷବୃକ୍ଷସ୍ୟ ଦ୍ୱେ ଫଳେ ହ୍ୟମୃତୋପମେ
ସୁଭାଷିତରସାସ୍ୱାଦଃ ସଙ୍ଗତିଃ ସଜ୍ଜନୈଃ ସହ ।

* ସଙ୍ଗୀତମପି ସାହିତ୍ୟଂ ସରସ୍ୱତ୍ୟାଃ ସ୍ତନଦ୍ୱୟଂ
ଏକମାପାତମଧୁରମନ୍ୟଦାଲୋଚନାମୃତମ୍ ।

* ଦ୍ରାକ୍ଷା ମ୍ଳାନମୁଖୀ ଜାତା ଶର୍କରା ଚାଶ୍ମତାଂ ଗତା
ସୁଭାଷିତରସସ୍ୟାଗ୍ରେ ସୁଧା ଭୀତା ଦିବଂ ଗତା ।

# ଉପହାର

ହୃଦୟର ଗଭୀର ଭକ୍ତି/ଶ୍ରଦ୍ଧା/ସ୍ନେହର
ନିଦର୍ଶନ ସ୍ୱରୂପ
ପୁସ୍ତିକାଟି

ଶ୍ରୀ/ଶ୍ରୀମତୀ ..............................ଙ୍କ
କରକମଳରେ ଅର୍ପଣ କଲି ।

ତା ..................

# ପରମବୈଷ୍ଣବକବି ଶ୍ରୀଶ୍ରୀରୂପଗୋସ୍ୱାମିଙ୍କର
# ସଂକ୍ଷିପ୍ତ ପରିଚୟ

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ପରମ ଅନୁଯାୟୀ, ଶ୍ରୀଗୌଡ଼ୀୟ ବୈଷ୍ଣବ ସଂପ୍ରଦାୟର ଶ୍ରେଷ୍ଠବିଦ୍ୱାନ୍, ପରମଭକ୍ତ, ତ୍ୟାଗୀ, ଉଦାରହୃଦୟ, ବୈଷ୍ଣବ ମୁକୁଟମଣି ଶ୍ରୀଶ୍ରୀ ସନାତନ ଗୋସ୍ୱାମିଙ୍କର ଅନୁଜ, ପରମବୈଷ୍ଣବକବି ଶ୍ରୀଶ୍ରୀରୂପଗୋସ୍ୱାମି କର୍ଣ୍ଣାଟ ଦେଶର ଭରଦ୍ୱାଜ ଗୋତ୍ରୀୟ ବ୍ରାହ୍ମଣ ଶ୍ରୀକୁମାର ଦେବଙ୍କର ଔରସରେ ଶୁଦ୍ଧପୂତା ମହାସ୍ୱସୀ ନାମ୍ନୀ ଶ୍ରୀମତୀ ରେବତୀ ଦେବୀଙ୍କର କୋଳମଣ୍ଡନ କରି ଖ୍ରୀ: ୧୪୮୯ରେ ଜନ୍ମ ଗ୍ରହଣ କରିଥିଲେ । ସେ ହଂସଦୂତ, ଉଦ୍ଧବସନ୍ଦେଶ, ଶ୍ରୀକୃଷ୍ଣାଭିଷେକ, ଶ୍ରୀଶ୍ରୀ ବୃହଦ୍‌ଗଣୋଦ୍ଦେଶ ଦୀପିକା, ଶ୍ରୀଶ୍ରୀ ଲଘୁଗଣୋଦ୍ଦେଶ ଦୀପିକା, ଶ୍ରୀସ୍ତବମାଳା, ଶ୍ରୀଲଳିତ ମାଧବ, ଶ୍ରୀଦାନକେଳିକୌମୁଦୀ, ଶ୍ରୀଭକ୍ତିରସାମୃତସିନ୍ଧୁ, ଶ୍ରୀଉଜ୍ଜ୍ୱଳନୀଳମଣି, ଶ୍ରୀପ୍ରଯୁକ୍ତାଖ୍ୟାତଚନ୍ଦ୍ରିକା, ଶ୍ରୀ ମଥୁରାମାହାତ୍ମ୍ୟ, ନାଟକଚନ୍ଦ୍ରିକା, ଶ୍ରୀବିଦଗ୍ଧ-ମାଧବ ନାଟକ, ଲଘୁଭାଗବତାମୃତ, ଶ୍ରୀଗୋବିନ୍ଦବିରୁଦାବଳୀ, ଶ୍ରୀଉପଦେଶା-ମୃତ ପ୍ରଭୃତି ବହୁ ଉପାଦେୟ, ଭକ୍ତିରସସମନ୍ୱିତ କାବ୍ୟ ଓ ନାଟକମାନ ପ୍ରଣୟନ କରି ସଂସ୍କୃତ ସାହିତ୍ୟକୁ ସମୃଦ୍ଧ କରି ଅଛନ୍ତି । ଖ୍ରୀ: ୧୫୬୪ରେ ସେ ମହାପୁରୁଷଙ୍କର ସ୍ୱର୍ଗପ୍ରାପ୍ତି ହୋଇଥିଲା । ଭାରତର ଜଣେ ପ୍ରଖ୍ୟାତ ପଣ୍ଡିତ ରୂପେ ତାଙ୍କର ଖ୍ୟାତି ଚିରକାଳ ବିଦ୍ୟମାନ ରହିବ, ଏହା ନିଃସନ୍ଦେହ ।

---

# ପରମଶୁଭାଶୀଃ

ଶ୍ରୀମାନ୍ ସତ୍ୟାଭିଳାଷି, ପ୍ରଖରତରମତିଃ, ସୌମ୍ୟସାହିତ୍ୟସେବୀ,
ଶ୍ରଦ୍ଧା-ଭକ୍ତି-ପ୍ରମୋଦୀ, ପ୍ରବଚନଚତୁରଃ, ପ୍ରୀତି-ମୈତ୍ରୀ-ବିଳାସୀ ।
ସୌହାର୍ଦ୍ଦ-ସ୍ୱାନ୍ତ-ନୀତିଃ, ଶ୍ରୁତିପଥ-ପଥିକୋ ମିଷ୍ଟଭାଷୀ, ମନସ୍ୱୀ,
ହାସ୍ୟ-ନାଟ୍ୟସ୍ୱରେଣ୍ୟଃ ସ ଜୟତୁ କମଳାହର୍ଷଣୋ "ବିଶ୍ୱନାଥଃ" ॥

ଭୂସ୍ୱର୍ଗ କାଶ୍ମୀର-କୁମାରିକାଦି
ନେପାଳ-ଲଙ୍କା ଭ୍ରମଣେ ପ୍ରବୀଣଃ ।
ଭୂଭାରତେଽସ୍ମିନ୍ ବହୁଧାମଦର୍ଶୀ
ସୁଖୀ ଚିରଂ ଜୀବତୁ "ବିଶ୍ୱନାଥଃ" ॥
ଯୋଽସ୍ମଂ "କୃପାସିନ୍ଧୁ"-କୃପାକଟାକ୍ଷୈଃ
ସିଦ୍ଧଃ ସ୍ୱୟଂସେବକତାମୁପେତଃ ।
ବିଭିନ୍ନଭାଷା-ବିଲସଦ୍ବିକାଶାନ୍
ସୁଗୁମ୍ଫିତା ସଦ୍ରଚନା ହି ଯେନ ॥

ପଲ୍ଲୀପ୍ରୀତିଃ ରତ୍ନରେଣୁଃ, ଋତୁସଂହାର ଏବ ଚ ।
ସପ୍ତଶକ୍ତି ବିଚିତ୍ରା ସା, ନୀତିନିର୍ଝରିଣୀ ତଥା ॥
ଅନ୍ତର୍ଜାଗୀତଗଣିତଂ, ତଳତଣ୍ଡୁଳମେବ ତତ୍ ।
ଟୀକା ଯମକରାଜସ୍ୟ, ସାଧ୍ୱୀ ବରହବାନ୍ଧବୀ ॥
ମଣିଯୁକ୍ତା ରତ୍ନମାଳା, ସିଦ୍ଧା ମିଳନ-ମାଧୁରୀ ।
ରୂପଗୋସ୍ୱାମିନା ସୂକ୍ତଂ, ହଂସଦୂତଂ ପ୍ରକାଶିତମ୍ ॥

ଅନନ୍ତ ଚତୁର୍ଦ୍ଦଶୀ
ତା ୯ । ୯ । ୧୯୭୫

ସନ୍ତତହିତଚିନ୍ତକ
ପଣ୍ଡିତ ଶ୍ରୀ ଆନନ୍ଦଚନ୍ଦ୍ର ମିଶ୍ର
କାବ୍ୟତୀର୍ଥ-ନ୍ୟାୟ-ସାଂଖ୍ୟଶାସ୍ତ୍ରୀଣଃ ।

# ପ୍ରାକ୍‌କଥନ

ପରମବୈଷ୍ଣବ, ପଣ୍ଡିତପ୍ରବର, ପ୍ରଥିତଯଶା ଓ ପ୍ରଖ୍ୟାତ ସଂସ୍କୃତ କବି ଶ୍ରୀଶ୍ରୀରୂପଗୋସ୍ୱାମିଙ୍କର "ହଂସଦୂତ" ମୋର ପିତାମହ ତଥା ବାଲ୍ୟଗୁରୁ ସ୍ୱର୍ଗତ କୃପାସିନ୍ଧୁ କରଙ୍କର ସଂଗୃହୀତ ପୁସ୍ତକାବଳୀରୁ ମୁଁ ବହୁବର୍ଷ ପୂର୍ବରୁ ପାଇଥିଲି । ଏହାର ଭାଷା, ଭଙ୍ଗୀ ଓ ଚିନ୍ତାଧାରା ଖୁବ୍ ଉଚ୍ଚକୋଟୀର । ମହାକବି କାଳିଦାସଙ୍କ "ମେଘଦୂତ"ରେ ବିରହୀଯକ୍ଷ ଯେପରି ମେଘକୁ ଦୂତରୂପେ ତା'ର ଅଳକାପୁରୀସ୍ଥିତା ପ୍ରିୟା ନିକଟକୁ ପଠାଇଥିଲା, ସେହିପରି କୃଷ୍ଣ ବ୍ରଜପୁରରୁ ଅକ୍ରୂର ସହିତ ମଥୁରା ଯାତ୍ରା କଲାରୁ ଶ୍ରୀରାଧା-ଙ୍କର କୃଷ୍ଣ ବିରହଜନିତ ଦୁଃଖ ଲାଘବ ନିମିତ୍ତ ଲଳିତା ହଂସକୁ ଦୂତରୂପେ ପଠାଇବାରେହିଁ ଏହି କାବ୍ୟର ଉତ୍କର୍ଷ ପ୍ରତିପାଦିତ ହୋଇଅଛି ।

ଏହାର ଶ୍ଳୋକମାନ ଭାବଦ୍ୟୋତକ, ଆବେଗପୂର୍ଣ୍ଣ, ମର୍ମସ୍ପର୍ଶୀ ଓ ଭକ୍ତିରସରସାଣିତ । ସାହିତ୍ୟରସିକ ସୁଧୀମାନଙ୍କର ଚିତ୍ତବିନୋଦନାର୍ଥେ ମୁଁ ଏହାକୁ ଓଡ଼ିଆ ଭାଷାରେ ପଦ୍ୟାନୁବାଦ କରିବା ନିମିତ୍ତ ପ୍ରୟାସ କଲି । ଏହାକୁ ପାଠକରି ସୁଧୀବର୍ଗ ଆନନ୍ଦ ଉପଭୋଗ କଲେ ମୁଁ ଶ୍ରମ ସାର୍ଥକ ମନେ କରିବି ।

ପଣ୍ଡିତ ଶ୍ରୀଆନନ୍ଦଚନ୍ଦ୍ର ମିଶ୍ର, କାବ୍ୟତୀର୍ଥ, ନ୍ୟାୟ-ସାଂଖ୍ୟ-ଶାସ୍ତ୍ରୀ, ଓ ଖ୍ରୀଷ୍ଟ କଲେଜର ଅଧ୍ୟାପକ ଶ୍ରୀଗଙ୍ଗାଧର ଷଡ଼ଙ୍ଗୀ ଏମ୍. ଏ. କେତେକ ସନ୍ଦେହ ମୋଚନ କରି ମୋତେ କୃତଜ୍ଞତା ପାଶରେ ଆବଦ୍ଧ କରି ଅଛନ୍ତି । ଉଦୀୟମାନ ଶିଳ୍ପୀ-ବନ୍ଧୁ ଶ୍ରୀଭବନାଥ ପାଠୀ ପ୍ରଚ୍ଛଦପଟ ଛବିଟି ଅଙ୍କନ କରି ମୋତେ ଆପ୍ୟାୟିତ କରିଛନ୍ତି ।

ବିନୟାବନତ
**ଦରଦୀକବି**

# ହଂସଦୂତ

ପଟ୍ଟବସନ ନିନ୍ଦଇ ଯା'ର
ଦଳାହରିତାଳ କାନ୍ତି,
ସୁନ୍ଦର ପାଦପଦ୍ମ ଜଗାଏ
ମନ୍ଦାରମାଳ ଭ୍ରାନ୍ତି ।
ସସ୍ମିତ ଚନ୍ଦ୍ର ମୁଖମଣ୍ଡଳ
ଶ୍ୟାମଳକଳମାଳ ଅଙ୍ଗ ,
ଅନ୍ତରେ ମମ ବିରାଜୁ ଗୋ
ସେହି ଚିନ୍ମୟ ଶ୍ରୀରଙ୍ଗ । ୧ ।

---

ଶ୍ରୀରଙ୍ଗ — ଭଗବାନ

ଛାଡ଼ିଗଲେ ଯେବେ ନନ୍ଦସଦନ ,
ବରଜଯୁବତୀ ଚିତ୍ତ-ମଦନ ,
ଦୂତ ଅକ୍ରୂର ରଥେ,
ମଥୁରା ନଗରୀ ପଥେ ;
ବିରହ-ବିଧୁରା ରାଧିକା ଅଗାଧ-ଚିନ୍ତା-ସଲିଳେ ମଗ୍ନା
କୃଷ୍ଣ-ପ୍ରଣୟ-ଲଗ୍ନା । ୨ ।

ମଦନ-ଚାପୁଁ ତା କଦନ ମୁକ୍ତି ଆଶେ,
ସଦନ ବରଜ ଆଳଏ ଯମୁନା ପାଶେ,
ସଙ୍ଗତେ ନେଲେ ରାଧା,
ଉପଶମିବାକୁ ଅଳ୍ପ ତାହାର କୃଷ୍ଣ-ବିରହ-ବାଧା;
କିନ୍ତୁ ସେ କେଳିକୁଞ୍ଜେ ବିଲୋକି ମିଳନ ଛବି,
ମୂର୍ଚ୍ଛିତା ହାୟ ! ବେଦନା ପୁଞ୍ଜ ମରମେ ଲଭି । ୩ ।

ସ୍ପନ୍ଦନହୀନ ରାଧା ଅଚେତନେ,
କମଳପତ୍ରେ ଆବରି ସଘନେ,
ସଜନୀ ଦୁଃଖ ଭାଳି,
ବେଢ଼ି ରୋଦରେ ମୁଞ୍ଚିଲେ ଯେବେ
ଅଶ୍ରୁ ସକଳ ଆଳି,
ଅର୍କତନୟା କଲ୍ଲୋଳେ ଗଲା ଭରି । ୪ ।

---

ଅର୍କତନୟା—ଯମୁନା ।

ବିରହବାଧା ଲଭିଣ ରାଧା ଲଳିତା ଅଙ୍କଗତେ,
ମୂର୍ଚ୍ଛା ଗଲେ କି ସତେ !
ନଳିନୀ-ଦଳେ ଯମୁନା ଜଳେ ତିନ୍ତାଇ ଆଳିକୁଳ
ବିଞ୍ଚିଲେ ହୋଇ ଟୁଳ;
ଅଙ୍ଗବେଦନା ଉପଶମନର ଆଶେ,
ବିଲୋକ ଉର୍ଦ୍ଧ୍ୱ ଶ୍ୱାସେ-
କଣ୍ଠେ ତାହାର ଲବେ,
ଶଙ୍କିତମନେ ବଂଶଲେ କାଳ ହର୍ଷ-ମଧୁର-ରବେ । ୫ ।

ବହଳ କମଳପତ୍ରେ ଶଯ୍ୟା ରଚନ କରି,
ଶୁଆଇଦେଲେ ସେ ବିରହିଣୀ ରାଧା ହସ୍ତ ଧରି;
ଜଳ ଆହରଣେ ଅର୍କତନୟା ପାଶେ,
ଚଳଇ ସଜନୀ ଲଳିତା ଉର୍ଦ୍ଧ୍ୱ ଶ୍ୱାସେ;
ମନ୍ଦ୍ର-ମଧୁର-ସ୍ୱନେ,
କମ୍ପାଇ ଅପଘନେ;
ଧବଳ ହଂସଟିଏ,
ସମ୍ମୁଖେ ଦେଖାହଏ । ୬ ।

ହଂସେ ବିଲୋକି ମନ୍ଦଗମନେ ଲଳିତା ଆଳି,
ଉଲ୍ଲାସ ଲଭି ସମ୍ମୁଖେ ଗଲେ ତାହାର ଚାଲି;
ଉଦ୍‌ବେଗଭରେ ଚିନ୍ତିଲେ ମନେ ମନେ,
ଭାଗ୍ୟେ ମିଳିଲା ଶ୍ରେଷ୍ଠଦୂତ ଏ ଜଣେ,

ବାର୍ତ୍ତାବହ ଏ ହଂସେ ପେଷିବା କଂସ ମଥୁରା ପୁର,
କୃଷ୍ଣ ସମୀପେ ରାଧାର ବିରହ ଦୁଃଖ ହୋଇବ ଦୂର । ୭ ।

ପ୍ରଣୟ ଶ୍ରେଷ୍ଠ ବନ୍ଧୁ ମାନସ,
ମଙ୍ଗଳ ପ୍ରାଣ ହୋଇଲେ ବଶ,
ଲକ୍ଷଣ ଶୋଷ ନୋହେ ସେ ଦୋଷ,
ସନ୍ଦେଶ ଦେଲେ କଂସଶତ୍ରୁ ଶ୍ରୀକୃଷ୍ଣେ;
ରାଧିକା ଈଶ- ଭକତ ବଶ,
ମାନବ ପ୍ରାଣ ଅବିଶ୍ୱାସ,
କାହାରେ ଲେଶ ଥାଏ କି ଶ୍ରେଷ୍ଠ ? ,
ହଂସେ ବିନୟୀ ହୋଇଲେକ ଅନ୍ତରିକ୍ଷେ । ୮ ।

ବାସ ତୋ ପୂତଜଳେ,
ଶୋଷ ନଳିନୀଦଳେ,
ବିମଳ-ହୃଦୟ ତୁ ସାରସ,
ମୁଁ ଯେ ଅବଳାଜନ,
ଗଲି ତୋରେ ଶରଣ,
ମାନସ ହୋଇଛି ମୋ ବିରସ;
ମହତ ଜନଠାରେ,
ଯାଚନା କଲେ ବାରେ,
ବିଫଳ କେବେ ହେଲେ ନୁହଇ,
ତେଣୁ ତୋ ପାଶେ ପ୍ରାର୍ଥୀ ହୁଅଇ ।୯।

ସ୍ୱର

ବିସ୍ମରି ହରି ଆମକୁ ତେଜିଲେ ଘର୍ଷ ଦିବସ ଯାମିନୀ,
ବିରହ-ଅଗ୍ନି-ତାପେ ବିଦଗ୍ଧ ସର୍ବ ଏ ଗୋପକାମିନୀ,
ହର୍ଷେ ରହିଲେ ମଥୁରା ନଗ୍ରେ,
ହଂସ ରେ ତେଣୁ ଚଳ ତୁ ବ୍ୟଗ୍ରେ,
ହୋଇଣ ବାର୍ତ୍ତାବହ,
କୃଷ୍ଣ ପୁରତେ କହ । ୧୦ ।

ମଙ୍ଗଳ ହେଉ ମାର୍ଗଗମନ ତବ,
ବିଘ୍ନବିହୀନ ଯାତ୍ରା ଏ ଅଭିନବ;
ହର୍ଷ ବହିଣ ମନେ,
ହଂସ ! ଚଳ ତୁ କ୍ଷଣେ;
ଦର୍ଶନେ ତୋର ଗତି,
ହୋଇ ଉତ୍ସୁକ-ମତି;
ଗୋପଶିଶୁଗଣ ଊର୍ଦ୍ଧ୍ୱନେତ୍ରେ ରହି,
ବିଲୋକିବେ ତୋତେ କୌତୁକଭାବ ବହି । ୧୧ ।

କିଶୋରଶେଖର ଗୋପୀମନଚୋର କଂସ ଆଦେଶ ପାଳି,
ମଧୁପୁର ଗଲେ ଚାଲି;
ହାୟ ! ଅକ୍ରୂର ରଥେ,
ନିଖିଳ ବିଶ୍ୱବିଖ୍ୟାତ ଜନପଥେ;
ଚଳ ସେ ମାର୍ଗେ ସଜ୍ଜନବର ତୁ ରେ,
ଦୂତରୂପେ ଆଜି ମିଳ ସେ କଂସପୁରେ । ୧୨ ।

ସ୍ୱସ୍ତି

ପାଣ୍ଡୁର ବଦନେ ଗଣ୍ଡ ଗଳତ-ବାଷ୍ପଧାରାର ଯୋଗେ,
ଚଣ୍ଡ ମଦନ ଦଣ୍ଡ ହରଣକେଷା ସତତ ବେଗେ,
କୃଷ୍ଣଚରଣ ସଙ୍ଗ-ପ୍ରଣୟିଜନେ,
ହଂସ ରେ ! ତୋର ନିଷ୍ଠୁର ଥିବ ମନେ;
ଚଳ ଚଞ୍ଚଳ ତୁରେ,
କଂସ ମଥୁରା ପୁରେ । ୧୩ ।

ଜମ୍ବୁ-ଶ୍ୟାମଳ ଅର୍କତନୟା ମଧୁର ନୀରେ,
ପିଇ ତୁ ଧୀରେ;
ଚନ୍ଦ୍ରକିରଣ ଧବଳକୋମଳ ପଦ୍ମନାଳେ,
ଭକ୍ଷି ବାରେ;
ବିଶ୍ରମି ଛାୟା ବଞ୍ଜୁଳ-ବୃକ୍ଷପରେ,
ଦଣ୍ଡକ ସୁଖଭରେ;
ହର୍ଦ୍ଦମାନସେ ଯାତ୍ରା ବିରଚି ଅଗ୍ରେ,
ଚଳ ତୁ ମଥୁରା ନଗ୍ରେ । ୧୪ ।

ଅକ୍ରୂର ଯେବେ କୃଷ୍ଣେ ବସାଇ ରଥେ,
ବାହୁଲ ମଥୁରା ପଥେ;
ଉଠେ ଚଳିପି ବ୍ରଜଅଙ୍ଗନା ଅଶ୍ରୁପୂରିତ ନୟନେ,
ଅନୁଗମିଲେ ଯେ ଅୟନେ;
ଅବଲମ୍ବ ସେ ମାର୍ଗ ଆଜ,
ଚଳ ଚଞ୍ଚଳେ ହଂସରାଜ !

ଛଅ

ସାର୍ଥକ ହେଉ ନାମ,
ପରମହଂସ ଧାମ । ୧୫ ।

ନିର୍ଜନେ ବନେ ନୀପବୃକ୍ଷର ପରେ,
କୃଷ୍ଣ ପ୍ରଣୟଭରେ;
ପିନ୍ଧା ବସନ ଆମ୍ଭର ଦେଲେ ରଖି,
ଚମ୍କିତା ସବୁ ସଖୀ;
ସେହି କଦମ୍ବ ସୁଶ୍ରୀ ଘଞ୍ଚ ଆଜି,
ନ ଭେଦେ ସୂର୍ଯ୍ୟ ତୀକ୍ଷ୍ଣ ରଶ୍ମିରାଜି;
ଗମନମାର୍ଗେ ତୋର,
ହରିବ କ୍ଳାନ୍ତି ଘୋର । ୧୬ ।

ସେହି କଦମ୍ବ ବୃକ୍ଷ ତଳେ,
କାନ୍ତେ ନାବୋଲ୍ଡ ହର୍ଷଭରେ;
ଶ୍ୟାମଳଗାତ୍ରୀ ଶିଖିନୀ ପକ୍ଷ ସହିତେ ସ୍ୱର୍ଣ୍ଣବାସ,
ମନ୍ଦ୍ରମଧୁର ଶବ୍ଦ ବିରଚି ଥାଏ ସେ କାନ୍ତ ପାଶ;
କଣ୍ଠେ ବାଜି ସେ ଶବ୍ଦ,
ଦଣ୍ଡେ କରଇ ସ୍ତବ୍ଧ;
ଜଗାଏ ମାନସେ କୃଷ୍ଣ ବଂଶୀ ତାନ,
ଉଦ୍‌ବେଗ କରେ ବିରହ-ବିଧୁର-ପ୍ରାଣ । ୧୭ ।

ଭାବ ଗଦ୍‌ଗଦ ଚିତ୍ତେ,
ଗୋପ ଅଙ୍ଗନା ନିତ୍ୟେ;

ସାତ

ରାସକେଳି ରତ ରସିକ କୃଷ୍ଣ ସଙ୍ଗେ,
ଦଣ୍ଡନମିତ ଶଠେ ଯହିଁ ନାନାରଙ୍ଗେ;
ମାନସ ପଟଳେ ଚିତ୍ର ଅଙ୍କିତ କଥା;
କସ୍ତୁରୀକଣ ମିଳେ ଯହିଁ ସର୍ବଥା;
ହଲ୍ଲୀଷକ ସେ ନୃତ୍ୟେ ମତ୍ତ ମଲ୍ଲୀବନେ,
କୃଷ୍ଣର ତୁଲେ ବରଜଯୁବତୀ ସଂଗୋପନେ । ୧୮ ।

କୁଞ୍ଜସମୀପେ ନଆଳ ଲତିକା ବେଷ୍ଟିତ କେଳିପୁର,
ଦର୍ଶନେ ତାହା ହଂସ ତୋହର ଦୁଃଖ ହେବରେ ଦୂର;
ମୁଗ୍‌ଧ ହେବ ତୋ ଚିତ୍ତଗହନ,
କ୍ଷିପ୍ରଗତିରେ ଚଳ ତୁ ବହନ;
କୃଷ୍ଣ ସମୀପେ ଗୋପ ଅଙ୍ଗନା ବାର୍ତ୍ତା ଦଅରେ ବେଗେ,
ବହ୍ନିକୁରେ ଉଦ୍‌ବେଗେ;
ହଂସରେ ଏବେ କଂସ ବଇରୀ କୃଷ୍ଣ ନଇଲେ ପାଶ,
ବିଚ୍ଛେଦ ଲଭି ବ୍ରଜଅଙ୍ଗନା ଅଚିରେ ହେବୁ ରେ ନାଶ ।୧୯।

ଦର୍ଶନେ କାମକେଳି କୌତୁକ ଥଳେ;
କାଳବଳନ୍ତେ, ଦୁଃଖ ଆମର ବଢ଼ିବ ଚିତ୍ତ ତଳେ;
ତଥାପି ହଂସ ! ଦେଖ ଅନ୍ତର ଭରି,
ମୁଗ୍‌ଧପରାଣେ ପ୍ରଣୟ ରଚିଲେ ଗୋପୀ ତୁଲେ ଯହିଁ ହରି;
ନେତ୍ରେ ଯେବେ ତୁ ନ ଦେଖୁ ସେ ମଧୁ ଚିହ୍ନମାନ,
ବ୍ୟର୍ଥ ହେବ ତୋ ସୁଗୁଣ-ଗରିମା ହଂସ ! ଜାଣ ।୨୦।

କର୍ଣ୍ଣେ ବାଜ୍‌ ସେ ବଂଶୀ ନିନାଦ ଥରେ,
ଗୁପ୍ତ ପ୍ରଣୟେ ମତ୍ତ ହୋଇଲେ ଗୋପ ଅଙ୍ଗନା ଖରେ;
ମୂକ ସାକ୍ଷୀ ତା' ଲତାବେଷ୍ଟିତ ଗୋବର୍ଦ୍ଧନ ଯେ ଗିରି,
ଦର୍ଶନେ ତକ୍ଷଁ ପ୍ରଣୟୀ କୃଷ୍ଣ ଅଶ୍ରୁ-ଶଯ୍ୟା ଶିରୀ;
ହର୍ଷିତ ହେବ ମନ,
କର ଚଞ୍ଚଳ ଗତ । ୨୧ ।

ଅଦ୍ରି ପତନେ ଜନ, ଜନପଦ ଧ୍ୱଂସ ହେବାର ଜାଣି,
ଇନ୍ଦ୍ର କୁପିତେ ପ୍ରହାର ବଜ୍ର ପକ୍ଷ ଦେଲେକ ହାଣି;
ଧ୍ୱଂସିବାକୁ ସେ ବୃନ୍ଦାବନ,
ଇନ୍ଦ୍ରର ଯେବେ ବଳାଲ୍ ମନ;
କୃଷ୍ଣ ଧରିଲେ ହସ୍ତେ ଅଦ୍ରି, ଲଜ୍ଜିତ ସୁରପତି,
ପର୍ବତ ସେହ୍ନି ଗୋବର୍ଦ୍ଧନ ଯେ ବିଖ୍ୟାତ ତେଣୁ ଅତି ।୨୨।

ଚପଳ ଶବର୍ଷିବୃନ୍ଦ ବିରହ ଦୁଃଖେ ସୁମରି କୃଷ୍ଣେ,
ଗୋବର୍ଦ୍ଧନର ତମାଳକୁଂଜେ ମାର୍ଗ ଖୁହ୍ନିଁ ସନ୍ତୁଷ୍ଟେ;
ଅର୍କତନୟା କଲ୍ଲୋଳରେ,
ଶୀତଳ ହେବ ତୋ ପକ୍ଷ ଖରେ,
ସୁଶୀତଳ ତୋର ପକ୍ଷପବନ ବାଜ
ଘୁଞ୍ଚିବ ଗୋପୀ ହୃଦସନ୍ତାପରାଜ । ୨୩ ।

ଦେଖିବୁ ହଂସ ! କୃଷ୍ଣର କେଳିବନ,
ଯହିଁ କଦମ୍ବ ବୃକ୍ଷ ବିରାଜେ ସଂଖ୍ୟାରେ ଅଗଣନ;
ପୁଲକିତବପୁ କୃଷ୍ଣ ଯେସନ ଦର୍ପକ-ଶର-ଘାତେ,
ନୀପସୁମନର ଶୋଭା ଧରେ ସେହି ମତେ;
ନେତ୍ରେ ଯେବେ ରେ ନ ଦେଖୁ ସେ ଶୋଭା ଆହା,
ବ୍ୟର୍ଥ ହେବ ତୋ ପ୍ରଣୟରସିକ କୃଷ୍ଣଭକ୍ତ ଯାହା ।୨୪।

ମୃତ୍ୟୁ ଲଭୁଁ ସେ ଅରିଷ୍ଟାସୁର ବୃନ୍ଦାବନର ଶୋଭା,
ହଂସରେ ଦେଖ ମର୍ମ ପରଶୀ ମନୋଜ୍ଞ ମନଲୋଭା;
ଶରଦ ବାରିଦ ଧବଳବର୍ଣ୍ଣ ନିରେଖି ଯକ୍ଷଚର,
କୈଳାସ ମଣି ଶିଖର ଊର୍ଦ୍ଧ୍ୱେ ଆରୋହଣ ତତ୍ପର;
ଦର୍ଶନେ ଯାର ଭ୍ରମ ଜାତ ହେଲା ଧନଦ ଭୃତ୍ୟ ମନେ,
ହଂସ ! ଦେଖ ରେ କ୍ଷଣେ । ୨୫ ।

ହଂସ ରେ ଚଳ ଭୁବନେ କଂସପୁର,
କୃଷ୍ଣ ବିରହ ସନ୍ତାପ ହେଉ ଦୂର;
ଯେ ଦିନୁ କୃଷ୍ଣ ଗୋପପୁରୁ ଗଲେ ଚାଲି,
ଦର୍ପକ ବାଣେ ପୀଡ଼ିତା ସକଳ ଆଳି;
କଳରବ ତୋର କର୍ଣ୍ଣେ ଶୁଣି,
କୃଷ୍ଣ ନୂପୁର ଶବ୍ଦ ଗୁଣି;
ମୂର୍ଚ୍ଛିତା ହେବେ ବ୍ରଜ ଅଙ୍ଗନା ଯେଣୁ,
ଚଳ ଚଞ୍ଚଳ ତେଣୁ । ୨୬ ।

ବିଶ୍ରାମ ନେବ ଭଣ୍ଡୀର ବନେ ତହିଁ,
ବ୍ୟାପ୍ତ ଗଗନେ ଶାଖା ଚୌଦିଗେ ଯହିଁ;
ଘଞ୍ଚ କୃଷ୍ଣପତ୍ର ବହୁଳ ସୁନ୍ଦର ତା'ର ଶୋଭା,
ଦୃଶ୍ୟ ସେ ମନଲୋଭା;
ଶୁକ୍ଳବର୍ଣ୍ଣ ଭ୍ରମର ସଙ୍ଗ ଲଭି,
ଶଙ୍ଖ ଚକ୍ର ସଙ୍କେତ ସମ ଦିଶିବ ସେ ମଧୁ ଛବି । ୨୭ ।

ବ୍ରହ୍ମା ନୟନୁଁ ବିଗଳିତ ହୋଇ ସ୍ୱଚ୍ଛ ପ୍ରଣୟ-ବନ,
ଜନ୍ମିଛି ତହିଁ ଗୁଳ୍ମଲତିକା ସଂଖ୍ୟାରେ ଅଗଣନ;
ଛିଦ୍ରଗତିରେ ଚଳ ତୁ ଇଷ୍ଟ ସେବି,
ମୁଗ୍‌ଧ ହେବେ ତୋ ଦର୍ଶନେ ବନଦେବୀ;
ମରାଳବର ! ତୁ ବ୍ରହ୍ମାବାହନ ଯେଣୁ,
ଦର୍ଶନେ ତୋର ବିଧି ଆଗମନ ସବେ ମଣିବେ ତେଣୁ ।୨୮।

ମୁଞ୍ଚିଲେ ଯେବେ ଅଶ୍ରୁ ନୟନୁ ବରଜବାଳୀ,
କୃଷ୍ଣ ଗମନ ଦୁଃଖ ମାନସେ ସତତ ଭାଳି;
ଦର୍ଶନ ଆସେ ମୁଗ୍‌ଧନୟନେ ଯମୁନା ତୀରେ,
ହର୍ଷବିହ୍ୱାନେ ଦଗ୍‌ଧପରାଣେ ଚଳିଲେ ଧୀରେ;
ପିଚ୍ଛିଳ ଆଜ ଅଶ୍ରୁ ପତନେ ସେ ରାଜପଥ,
ସ୍ଖଳିତ ଚରଣ କମ୍ପିତ ଉର ମର୍ମାହତ । ୨୯ ।

---

ଭଣ୍ଡୀର—ବୃକ୍ଷବିଶେଷ, ପ୍ରଣୟବନ—ପ୍ରେମାଶ୍ରୁ, ବିଧି-ବ୍ରହ୍ମା

କୌତୁକ-ବଶେ ମତ୍ତମାଧବ କାଳସ୍ଥ ଶିରେ,
ନର୍ତ୍ତନେ ଅନ୍ଧ ମସ୍ତକମଣି ପତନେ ଧୀରେ;
ଧୂମବର୍ଣ୍ଣ ଧରିଲା ସେ ହ୍ରଦ ଅମ୍ବୁରାଶି,
ତୀରପ୍ରାନ୍ତେ ତା ପୁଷ୍ପିତ ନୀପ ମତ୍ତହାସୀ;
ପୂଣ୍ୟ ମଧୁର ସେ ଜଳପାନେ,
ଧନ୍ୟ ମଣିବୁ ତୋହର ପ୍ରାଣେ ।୩୦।

ଅର୍କତନୟା ପ୍ରାନ୍ତେ ନୟନେ ଦେଖ ସେ ବୃନ୍ଦାବନ୍ତି,
ସୌରଭମୟ ତୁଳସୀବୃକ୍ଷ ପୁଣ୍ୟଗାଥୀ ଅଛି;
ଦନୁଜବଇରୀ ବିରହ ଦୁଃଖେ ବାଳୀ,
ଦଗ୍ଧ ପରାଣେ ହେଲେ ଯେବେ ନିଉଛୁଳି;
ନିର୍ମଳ ମନେ ବୃନ୍ଦାବନ୍ତିର ପଦେ,
ଆଶ୍ରୟ ନେଲେ ଭକ୍ତିର ଗଦଗଦେ । ୩୧ ।

ଲଙ୍ଘି ତୁରିତ ଏକାଦଶବନ ଗୁଞ୍ଜିତ କେକାରବେ,
ଆମ୍ରଗହଳ ବ୍ରଜ ମଧୁବନେ ହଂସ ! ଚଳ ରେ ଲବେ;
ନିର୍ମଳ ଯା'ର କୀର୍ତ୍ତି ଚପଳ ଗଗନେ,
ଶୁଭ୍ର କରଇ ଗଗନବକ୍ଷ ସଘନେ;
ସେହ୍ନ ସେ ଯାଦବ ନଗ୍ରେ;
ହଂସ ଚଳ ରେ ବ୍ୟଗ୍ରେ । ୩୨ ।

କୈଳାସ ସମ ଦୃଶ୍ୟ ବହୁଳ ଉନ୍ନତ ନିକେତନ
ସ୍ତମ୍ଭ ଶୋଭିତ ସଦ୍ମସକଳ ପୁଷ୍ପିତ ଉପବନ,

---

ଦନୁଜବଇରୀ—କୃଷ୍ଣ, ନିକେତନ—ଗୃହ, ସଦ୍ମ—ଗୃହ ।

ଅର୍କତନୟା ରାଜେ ମଧୁପୁରୀ ପାଶେ,
ପାନକର ତାର ମଧୁ ନୀର ଉଲ୍ଲାସେ;
ହଂସ ରେ ! ବାରେ ଦର୍ଶନେ ମଧୁପୁର,
ହର୍ଷ ଲଭିବୁ ଦୁଃଖ ହୋଇବ ଦୂର ।୩୩।

ଶଙ୍କର ଅନୁଚର ସେ ବୃଷଭ ଭକ୍ଷଇ ଯହିଁ ତୃଣ,
ବ୍ରହ୍ମାବାହନ ମରାଳ ଭକ୍ଷେ ପଦ୍ମନାଳିକା ପୁଣ;
କାର୍ତ୍ତିକେୟର ମୟୂର ଭୁଞ୍ଜେ ସର୍ପ ସକଳ ଯହିଁ,
ଇନ୍ଦ୍ରବାହନ ଐରାବତ ଯେ ଶଲ୍ଲକୀ ଖାଏ ତହିଁ । ୩୪ ।

ସ୍ଖଳିତ ବସନା ସଂଜ୍ଞା ବିହୀନା ରାଧା,
କଣ୍ଠେ ଜୀବନ ଲଭି ଏ ବିରହ ବାଧା;
ଛିନ୍ନ ହୋଇଛି କଣ୍ଠୁଁ ମୁକ୍ତାମାଳା,
କୃଷ୍ଣ ସୁଗୁଣ କୀର୍ତ୍ତନ ଶୁଣି ବାଳା;
ଉନ୍ମାଦିନୀ ସେ ହୁଅଇ କ୍ଷଣକୁ କ୍ଷଣ,
ଦର୍ଶନେ ଦଶା, ହସିବେ କୁଳଟାଗଣ । ୩୫ ।

ଉନ୍ମାଦିନୀ ସେ ସୁନ୍ଦରୀ ରାଧା ଥରେ ଭାବ ଗଦ୍‌ଗଦେ,
ଲାକ୍ଷାରସରେ ରଞ୍ଜିତ କଲା ତାହାର ଦକ୍ଷ ପଦେ,
ବିଭ୍ରମେ ବାମଚରଣ ରହିଛି ଖାଲି,
ସଂଭ୍ରମବଶେ ଉପହାସ କଲେ ଆଲି;
କୃଷ୍ଣ ପ୍ରଣୟେ ଉନ୍ମାଦିନୀ ସେ ନାରୀ,
ଗୋପବନିତାର ନିନ୍ଦା ଲଭଇ ଭାରି । ୩୬ ।

---

ଶଲ୍ଲକୀ—ଶାଲ୍ଲକୀ ଗଛ, ପାଣି କେନ୍ଦୁରୀ ।

ଦେଖ ସମ୍ମୁଖେ କଂସ ବିଜୟୀ କୃଷ୍ଣ ଆମ,
ଅଶୋକ ପୁଷ୍ପେ ମଣ୍ଡିତ ହୋଇ ପୂର୍ଣ୍ଣକାମ;
ଦର୍ଶନେ ତାହା ପୁର ନରନାରୀ,
ସସ୍ମିତ ମୁଖ ହର୍ଷ ଗୋ ଭରି;
ଦେଖି ଗବାକ୍ଷ ପୁଟେ,
ପୀରତି-ଉତ୍ସ ଛୁଟେ;
ଅନ୍ତର ଭରି ଦର୍ଶନ ଆଶେ ଗୋପଅଙ୍ଗନା ମେଳେ,
ବ୍ୟଗ୍ର ପରାଣେ ଉତ୍ସୁକତାର ଲକ୍ଷ ଜୁଆର ଖେଳେ ।୩୭।

କାନ୍ତ ଚରିତ ସ୍ମରି ଏକାନ୍ତେ ଚିନ୍ତିତ ମନେ ରାଧା,
ଊର୍ଦ୍ଧ୍ୱେ ଥାପିଲ ଦୃଷ୍ଟି ତାହାର ଲଭିଣ ବିରହ ବାଧା;
କର୍ଣ୍ଣେ ତାହାର ଶୁଣାଅ ହେ ମଧୁବାର୍ତ୍ତା,
ବିରହ-ବହ୍ନି ତାପେ ଯେ ଦଗ୍ଧା, ଆର୍ତ୍ତା;
କୃଷ୍ଣ ଆଗମ ଅୟନେ,
ରହିଁଛି ଆଶାୟୀ ନୟନେ;
ପଙ୍କଜମୁଖୀ ରାଇ
କୃଷ୍ଣ-ପ୍ରଣୟବାଇ ।୩୮।

"ଲଜ୍ଜା ବରଜ କୃଷ୍ଣେ ସୁମରି କାନ୍ଦେ ବରଜବାଳୀ,
ସ୍ୱ ନୟନେ ଆଜ ଦେଖ·ହେ କୃଷ୍ଣ ! ନଷ୍ଟ୍ରଭ ଗୋପନାରୀ,"
ହଂସ ! ତୁରିତ ଦିଅ ଏ ବାର୍ତ୍ତା କୃଷ୍ଣେ,
ମାର୍ଗ ରହିଁଛୁଁ ଗୋପବାଳା ଅତି ତୃଷ୍ଣେ;
ପୀରତି ବଚନ-ଜଳ୍ପୀ ମଥୁରା ରମଣୀ ଚୟ
ବାକ୍ୟ ଶୁଣି ତୁ ନ ହେବୁ ତହିଁରେ ଆତ୍ମହରା । ୩୯ ।

କୃଷ୍ଣର ସେହି ଚନ୍ଦ୍ରବଦନେ ଭାଗ୍ୟବଳେ,
ମଧୁପୁର ନାରୀ ଦର୍ଶନ କରେ ହଂସ ! ଖେଚର;
ହର୍ଷମାନସେ ବିତାଏ ଦିବସ ଯାମିନୀ,
ମୁଗଧପରାଣେ ଆଜି ମଧୁପୁର କାମିନୀ;
ଦେଖି ସେ ଦୃଶ୍ୟ ପକ୍ଷିରାଜ !
ସାର୍ଥକ କର ନେତ୍ର ଆଜ,
କିନ୍ତୁ ଆମେ ଏ ବରଜବାଳୀ,
ମୃତ୍ୟୁ ଦୁଆରେ, କୃଷ୍ଣେ ଭାଳି ! ୪୦ ।

ପ୍ରବେଶି ମଥୁରା ନଗ୍ରେ,
ହଂସ ବିଲୋକ ଅଗ୍ରେ;
ସଜ୍ଜିତ ଯଦୁବଂଶ ସଦନ,
ନବାଗତ ତହିଁ ବିଭ୍ରମମନ;
କୃଷ୍ଣସଦନ-ଊର୍ଦ୍ଧ୍ୱେ ଉଡ଼ଇ ବିଜୟବାନା,
ସ୍ପର୍ଶି ଗଗନମଣ୍ଡଳ ଧରେ ବର୍ଣ୍ଣ ନାନା ;
ଦଣ୍ଡେ ମାତ୍ର ବିଶ୍ରାମ ଲଭି ତହିଁ,
ବାର୍ତ୍ତା ଦିଅ ତୁ କୃଷ୍ଣେ, ଥିବେ ସେ ଯହିଁ । ୪୧ ।

ଅନ୍ତଃପୁର ସଦ୍ମଶିଖର ରାଜି,
ସ୍ଫଟିକ କଳସେ ପୂର୍ଣ୍ଣ ହୋଇଛି ଆଜି;
ମଣିମାଣିକ୍ୟ ରତ୍ନ ଖଚିତ ଚଞ୍ଚୁ ଚରଣ ଯୁତ,
ମରାଳ ମୂର୍ତ୍ତି ଶୋଭାପାଏ ତହିଁ ଦେଖ ରେ ହଂସଦୂତ !

ପଦର

ବିଲୋକି ନୟନେ ଛଦ୍ମମରିଳେ,
ବ୍ରହ୍ମା ଆଗମ କେହ୍ମ ଅବା ଭାଳେ;
ଦର୍ଶନେ ତୋର ହର୍ଷ ଲଭିବେ ମଥୁରାପୁବାସୀ ପରା,
ଅଭିନନ୍ଦନେ ମୁଗ୍ଧ କରିବେ, ହେବୁ ରେ ଆମୃହସ । ୪୨ ।

ଉଦ୍ଧବ ଯେବେ ସ୍ୟନ୍ଦନ ଘେନି ଆସିଲା ବୃନ୍ଦାବନେ,
କଂସ ଆଦେଶେ କୃଷ୍ଣେ ଘେନି ସେ ଚଳିଲା ହର୍ଷମନେ,
ଗୋପଅଙ୍ଗନା ସକଳେ,
ଦଗ୍ଧପରାଣେ ବିକଳେ ;
ଜଣ ଜଣ କରି ଅର୍ପିଲେ ଶୁକ କୃଷ୍ଣକରେ,
ନିଜ ନିଜ ମଧୁ ପ୍ରଣୟ ଚରିତ ବର୍ଣ୍ଣି ଖରେ,
କୃଷ୍ଣେ ଲୋଡ଼ିଇ ମତ୍ତପରାଣେ ଗୋପଅଙ୍ଗନା ଆଜି,
ଅନ୍ୱେଷି ସିନା ଯମୁନା ପୁଳିନେ କୁଞ୍ଜ ବିପିନ-ରାଜି । ୪୩ ।

ମୟୂର ପୁଚ୍ଛ ଶୋଭିତ କୃଷ୍ଣ ବାହୁଡ଼ିବେ ଗୋପପୁର,
ଚାହିଁଲେ ସିନା ଗୋପଅଙ୍ଗନା ସନ୍ତାପ କରି ଦୂର;
ଶୁକସାରିକା ଯେ କୃଷ୍ଣପାଶେ,
ବର୍ଣ୍ଣେ ଦୁଃଖ ମଧୁରଭାଷେ;
ଧୈର୍ଯ୍ୟ ଥାପି ଗୋ ବ୍ରଜଅଙ୍ଗନା ସକଳେ,
କାନ୍ଦ ନା ଆଜି କୃଷ୍ଣ ବିରହ ବିକଳେ;
ଅଚିରେ ଆସିବେ ଫେରି,
ମାର୍ଗେ ଥାଅ ଗୋ ହେରି । ୪୪ । ,

ଷୋହଳ

ହର୍ମ୍ୟ ଊର୍ଦ୍ଧ୍ୱେ ବଳୋକ ଅଗୁରୁ-ଧୂମ୍ର ଶିଖା,
ନବଜଳଧର କାନ୍ତି ଯା ପାଶେ ପଡ଼ଇ ଫିକା;
ପୁଚ୍ଛ ଟେକ,
ମୁଗ୍‌ଧ ପରାଣେ ନୃତ୍ୟନିରତ ମତ୍ତ କେକା;
ଦର୍ଶନେ ତାହା ମାନସେ ଲଭିବୁ ଶାନ୍ତି,
ରମ୍ୟ ମୂରତି ନବଜଳଧର କାନ୍ତି;
ସମ୍ମୁଖେ ହେଉ ବରଜବଧୂଙ୍କ ଶୋଭା,
ହର୍ଷ ଲଭିବୁ—ଦୃଶ୍ୟ ସେ ମନଲୋଭା । ୪୫ ।
କଂସ ନଗର ମଧ୍ୟଭାଗେ,
ହଂସ ରେ ! ତହିଁ ଦେଖିବୁ ଆଗେ;
ବାତାୟନ-ପଥେ କୃଷ୍ଣର କେଳିବାସ,
ମୁକ୍ତାଗୁଚ୍ଛେ ଖଚିତ ଯହିଁ ସ୍ଫଟିକ ସ୍ତମ୍ଭ ପାଶ;
ଭିତ୍ତି ସକଳ ଖଚିତ ହେମବର୍ଣ୍ଣେ ତହିଁ,
କୃଷ୍ଣବାଲ୍ୟଚରିତ ସକଳ ଖୋଦିତ ଯହିଁ ।୪୬।
ସଦନ ଦୁଆରେ ମର୍କତମଣ୍ଡ ଯଷ୍ଟି ଥାଏ,
ମତ୍ତମୟୂର ଯାହେ ଯହିଁରେ ନିଦ୍ରା ଯାଏ;
ମଣିମଣ୍ଡ ସେହି ଯଷ୍ଟି ପରେ;
ବାସ୍ତୁମି ତଳେ ଶାନ୍ତିଭରେ;
କୃଷ୍ଣର କେଳି ଲୀଳା,
ମର୍ମେ ତୋ ଅନୁଭବ;
ଦଣ୍ଡେ ମାତ୍ର ହେବୁ ରେ ଆତ୍ମହରା,
ମୁଗ୍‌ଧ ହୋଇବ ଚିତ୍ତ ଗହନ ପରା । ୪୭ ।

*ହେମବର୍ଣ୍ଣେ—ସ୍ୱର୍ଣ୍ଣାକ୍ଷରରେ ।

କୋମଳ ଧବଳ ତଳ୍ପ ଶୋଭିତ ପଲଙ୍କରେ,
ଶୟିତ କୃଷ୍ଣ ଦେଖିବୁ ହଂସ ପ୍ରଣୟଭରେ;
ହେ ପୁରନ୍ଦରୀ ଶୋଭା,
ଆହା ଜନମନ ଲୋଭା;
ଭୁଜ ଉପଧାନେ ବିରାଜେ ପୂର୍ଣ୍ଣଚନ୍ଦ୍ର ସମ,
କୃଷ୍ଣର ମୁଖମଣ୍ଡଳ-ଶୋଭା ସେ ଅନୁପମ । ୪୮ ।

ଗଣ୍ଡଯୁଗଳେ କୁଣ୍ଡଳ ଆହା ଶୋହେ,
ନନ୍ଦ ଯମୁନା କଲ୍ଲୋଳ ମନ ମୋହେ;
କୌଷେୟବାସ କାଞ୍ଚନ ଆଭା ଧରେ;
ଇନ୍ଦିରା ସାଥେ ହରି ଚିତ୍ତୟ ଖରେ;
ଦର୍ଶନେ ତାହା ଚକ୍ଷେ,
ପୁଲକ ଜାଗିବ ବକ୍ଷେ । ୪୯ ।

ଯଦୁକୁଳପତି ସନ୍ନିଧାନେ,
ହର୍ଷିତ ମନେ ପୂର୍ଣ୍ଣ ପ୍ରାଣେ;
କରେ ଅକ୍ରୁର କୀର୍ତ୍ତିଗାନ,
ପୁରାଣର ଇତିବୃତ୍ତମାନ ।
ଗୋପ ଅଙ୍ଗନା କର୍ଣ୍ଣେ ଶୁଣି,
ଯା' ନାମ, ଶଙ୍କା ଆନ୍ତ ଗୁଣି;
ମଣିମୟ ସେହି ସ୍ତମ୍ଭପାଶେ,
କୁରୁକୁଳଗାଥା ବର୍ଣ୍ଣେ ହାସେ । ୫୦ ।

---

ତଳ୍ପ—ଶେଯ, ଉପଧାନ—ତକିଆ ।

ଯଦୁକୁଳ ଅବତଂସ ବାସେ,
ଆଜ୍ଞା ପାଳନେ ଉଭୟ ପାଶେ;
ସାତ୍ୟକ କୃତବର୍ମା,
ଉଭ ଯେ ପୁଣ୍ୟକର୍ମା;
ଚାମର ଚଳାଏ ଉଦ୍ଧବ ହରିଭକ୍ତ,
କୃଷ୍ଣ ଚରଣଯୁଗାସକ୍ତ
ଗୁରୁପଦ ସେବେ ନିର୍ଭୟ ମନେ ଶିଷ୍ୟ ଯଥା,
ଶୁଦ୍ଧ ମାନସେ ପଙ୍କଜପଦ ସେବେ ସେ ତଥା । ୫୧ ।

ହସ୍ତଯୁଗଳ ସମ୍ମୁଖେ ଯୋଡ଼ି ରହି,
ସମ୍ମୁଖେ ଉଭା ଭକ୍ତ ଗରୁଡ଼ ତହିଁ;
ଯେତେବେଳେ ହରି ଶ୍ରୀମୁଖୁଁ ଆଜ୍ଞା ପାଏ,
ସତ୍ୱର ଅନୁରକ୍ତ ପବନେ ଧାଏଁ;
ସେକାଳେ ବିଶାଳ ପକ୍ଷଯୁଗଳ ଶବ୍ଦ,
ମାନବ କର୍ଣ୍ଣଯୁଗଳ କରଏ ସ୍ତବ୍ଧ;
ଶଙ୍କା ପୂରିତ ଉରେ,
ଜନପଦବାସୀ ଚକିତେ ଥାନ୍ତି ପୁରେ । ୫୨ ।

ବର୍ଣ୍ଣି ନ ପାରେ ବ୍ରହ୍ମା ସେ ସୁମହାନ,
ଯାତ୍ର ଚରଣ ଅଙ୍ଗୁଳ ଗୁଣ ମାନ;
ସ୍ନିଗ୍ଧ ମଧୁର ମୂର୍ତ୍ତି ବିଲୋକ ଥରେ,
ମୁଗ୍ଧ ହୋଇଲୁଁ ଗୋପଅଙ୍ଗନା ଖରେ;
ରମଣୀସୁଲଭ ଚପଳତା ବଶେ ଦୁଃସାହସ ଏ କର୍ମେ,
ଅଜ୍ଞାନବଶେ ମଜ୍ଜି ସକଳେ ଭୋଗୁଁ ଏ ଦୁଃଖ ମର୍ମେ । ୫୩ ।

ଉଣେଇଶ

ବ୍ରହ୍ମା ହରଣ କରି ଗୋପବାଳ ଥରେ,
ସନ୍ତ୍ରାସ ଲଭି ଅର୍ପିଲେ ପଦତଳେ;
ପ୍ରଣମି କୃଷ୍ଣ ପଦେ ଅଗଣନ ଥର୍ହିଁ,
ଉତ୍ପାଟିଲେ ସେ ନିଜ ଶିରକେଶ ଯନ୍ହିଁ;
ବିଜ୍ଞାମି ଯନ୍ତ ନାରଦ ଦୃଷ୍ଟି ପଥେ
ବିନ୍ଦେକରି ଯାରେ ବନ୍ଧଣ ହୃଦଗତେ ।୫୪

ଶ୍ରୀହରି ରମ୍ୟ ପଦ ଦର୍ଶନେ ପଦ୍ମ ରାଶି,
ସଦ୍ମ ରଚିଲେ ସଲିଳ ବିଶ୍ୱର ହର୍ଷେ ଆସି;
ଧିକ୍କାରି ହିମ ଅମ୍ବୁର ଅବସ୍ଥର,
ବୃଷ୍ଟି କରଇ ହିମକଟରେ ନିଶା କାଳ;
ଶତ ଶତ ବାର ବନ୍ଦ୍ୟ ସେ ପାଦପଦ୍ମ,
କୋଟି ନମସ୍ୟ ଧନ୍ୟ ସେ ଶୋଭା ସଦ୍ମ । ୫୫ ।

ମର୍କତମଣି ସ୍ତମ୍ଭପ୍ରତିମ ଯୁଗଳ ଜାନୁ,
ନିନ୍ଦେ ଉଲଟ ରମ୍ଭା ଆଭା ସେ ସୁଶ୍ରୀ ଭାନୁ;
ନେନେ ନିରେଖି ଗୋପଅଙ୍ଗନା ସେ ମଧୁ ଶୋଭା
ସ୍ନିଗ୍ଧ ମଧୁର ମୁଗ୍ଧକର ସେ ମାନସଲୋଭା;
ସେ ଜାନୁ ଯୁଗଳ ସ୍ତମ୍ଭେ ଆଶ୍ରା କରି
ବନ୍ଧ ବରଜଯୁବତୀ ଚିତ୍ତ-କରୀ । ୫୬ ।

---

ସୁଶ୍ରୀଭାନୁ—ସୁନ୍ଦରଶ୍ରେଷ୍ଠ

ଜୋଡ଼ଏ

କୃଷ୍ଣର ନାଭିମଣ୍ଡଳେ ଯେଉଁ ଅବ୍‌ଜ ଲୋଟି,
ସମ୍ଭବ ଚତୁର୍ଦ୍ଧ ବ୍ରହ୍ମା, ସର୍ଜେ ବିଶ୍ୱକୋଟି;
ସରସୀ ତୁଲ୍ୟ ଦିଶେ ତାହା ଗୋପୀ ଚକ୍ଷେ,
ଶତଶ ପଦ୍ମ ବିହରନ୍ତି ତା' ବକ୍ଷେ;
ସେ ନାଭି-ସରସୀ ଫୁଲ୍ଲ-ପଦ୍ମ,
ସୃଷ୍ଟିକର୍ତ୍ତା ବ୍ରହ୍ମା ସଦ୍ମ । ୫୭ ।

ରମ୍ୟ ତ୍ରିବଳି ଉଦରପ୍ରାନ୍ତେ ଶୋଭେ,
ବକ୍ଷେ ସୁମନ-ମାଳିକା ମାନସ ମୋହେ;
କୌଷେୟବାସେ ମଣ୍ଡିତ କଟିଦେଶ
ବର୍ଣ୍ଣି ନୋହେ ସେ ଶୋଭା ପରିପାଟୀ ଲେଶ;
ଯଶୋଦା ସେ ମୁଖ ଗହ୍ୱର-ପଥେ କୃଷ୍ଣ ଉଦରେ ଥରେ,
ବିଶ୍ୱ ସକଳ ନେତ୍ରେ ଦେଖିଲା ବିସ୍ମିତ ହୋଇ ଖରେ । ୫୮ ।

ବନମାଳାଶୋଭି କୃଷ୍ଣ ଉର,
ମୋହେ ଗୋପବାଳା ଚିତ୍ତପୁର;
ଦର୍ଶନେ ଯାର ଅବ୍‌ଜନୟନା ବରଜନାରୀ,
ଦର୍ପକ ସମ ଚିତ୍ତେ ଚିନ୍ତା ହୋଇଲେ ଧାରି;
କୌସ୍ତୁଭମଣି ଖଦ୍ୟୋତ ପ୍ରଭା ଗୁଣ,
ସୁନ୍ଦର ଦିଶେ ଶ୍ରୀପତି କଣ୍ଠେ ପୁଣ;
ବକ୍ଷଶୋଭୀ ସେ କୌସ୍ତୁଭମଣି କୋଟି ସୂର୍ଯ୍ୟର ତେଜ,
ନିନ୍ଦଇ ଖରେ, ରବିପାଶେ ଯଥା ଖଦ୍ୟୋତ ତୁଚ୍ଛ ହେଜ ।୫୯।

ଏକୋଇଶ

ଇନ୍ଦ୍ରନୀଳର ସ୍ତମ୍ଭଯୁଗଳେ ନିନ୍ଦେ ଯା' ବେନିଭୁଜ,
କେୟୂରଭୂଷିତ କେଶୀହନ୍ତକ ଧନ୍ୟ ସେ ବଳାନୁଜ;
ଉନ୍ମାଦନୀ ସେ ଗୋପୀଭୁଜମାଳ କଣ୍ଠେ ଦିଶୋହେ,
ମତ୍ତମାନସେ ମୁଗ୍ଧ ପରାଣେ ଚିତ୍ତ ମୋହେ;
କସ୍ତୁରୀବାସେ ବରଜବାଳା,
ହର୍ଷେ କଲେକ ହୃଦୟମାଳା ।୭୦।

ନବ ଲାବଣ୍ୟ କଲ୍ଲୋଳ ଅଗଣନ,
ବିଚ୍ଛୁରେ ମୁଖମଣ୍ଡଳୁଁ ଘନ ଘନ;
ମୁଗ୍ଧ ମଧୁର ଚିତ୍ତ,
ପ୍ରଣୟ ଭାବନା ସିକ୍ତ;
ଚଞ୍ଚଳ ଭ୍ରୂବଲ୍ଲୀ ଯୁଗଳ,
ହାସ୍ୟ ପୀୟୂଷ, ଅବା କେଳ ଘର;
ସସ୍ମିତମୁଖେ ଦର୍ଶନପଂକ୍ତି 'ଯା'ର,
ମୁକ୍ତାମାଳାର ପ୍ରତ୍ୟୟ ବାରବାର ।୭୧।

କୃଷ୍ଣ ମଧୁର ରୂପ ବର୍ଣ୍ଣନେ ଅକ୍ଷମ ମୁଁ ଯେ ହଂସ !
ବାକ୍ୟେ କି ଅବା ବର୍ଣ୍ଣିବ ଯଦୁବଂଶର ଅବତଂସ;
ନେତ୍ରଯୁଗଳେ ଦର୍ଶନ କଲେ ଥରେ,
କରିବୁ ରେ ଉପଲବ୍ଧି ସେ ରୂପ ଖରେ;
ଚିନ୍ମୟ ସେହି ମୁକ୍ତି ଧାମ,
ଦର୍ଶନେ ହେବୁ ପୂର୍ଣ୍ଣକାମ । ୭୨ ।

---

କେଶୀହନ୍ତକ ବଳାନୁଜ—କୃଷ୍ଣ ।

ମଦକଳରବ ହଂସୀ-ସୁରତ-ମୁଗ୍ଧମତ୍ତରେ ହଂସ !
ଦେଖି ଟ୍ରସ ମୁଗ୍ଧା ମଧ୍ୟସ୍ଥର ବଧୂମେନେ ଯଦୁ ଅବତଂସ;
ସେକାଳେ ଗ୍ରାମ୍ୟ ବରଜ ଯୁବଣୀ କଥା,
ବର୍ଣ୍ଣିବୁ ନାହିଁ ଫଳ ହେବ ଅନ୍ୟଥା;
ଗ୍ରାମ୍ୟରମଣୀ ନମ୍ର ବଚନ ଶ୍ରାବ୍ୟ କ ସେତେବେଳେ ?
ସୁଧାଚନ୍ଦ୍ରର ରସନା ଲୋଡ଼େ କ ଅମ୍ଳାତକ ହେଲେ ? । ୭୩ ।

ମତ୍ତକୋକିଳ ଉଚ୍ଚ କୂଜନେ ପୂରିତ ବୃନ୍ଦାବନ,
ପ୍ରସ୍ଫୁଟିତ ସେ ବନମଲ୍ଲିକା ଗନ୍ଧ ଆମୋଦେ ଘନ;
କର୍ଣ୍ଣେ ଶୁଣି ସେ ଶବ୍ଦ,
ଘ୍ରାଣେ ହେଉଁରେ ସ୍ତବ୍ଧ;
ଅଙ୍ଗ ପୁଲକେ ମନ୍ଦବାତେ,
ଦର୍ପକ ବାଣେ ଅକସ୍ମାତେ;
ଦଗ୍ଧ ପବନେ ଦୀର୍ଘ ଦିବସ ଯାମିନୀ,
କହିବୁ ହଂସ ! ଯାଉ ଆମେ ଗୋପକାମିନୀ ।୭୪।

ଗୋଷ୍ଠ-ବାତୁଡ଼ା କୃଷ୍ଣେ କହିବ ବୃନ୍ଦାବନର କଥା,
ଗୌରବଯୁକ୍ତ ତୃଣପ୍ରିୟାରାଧା ମର୍ମ ବେଦନା ତଥା;
ନମ୍ର ବଚନେ ନମ୍ର ବଦନେ ଲଳିତା ସଖୀ,
ବର୍ଣ୍ଣିଲ ରାଜ ବଚ୍ଛେଦ-ଗାଥା ଭକ୍ତି ରଖି—
ଅମ୍ବୁଜ ପଦତଳେ,
ସ୍ୱର୍ଣ୍ଣପୀଠର ପରେ । ୭୫ ।

---

ଅମ୍ଳାତକ—ଖଟା ଦହି;

ଶୈଶବକାଳୁଁ ଯତ୍ନେ ନୂତନ ପଦ୍ମଦଳେ,
ପାଳିଥିଲି ଯେଉଁ କପିଳିକା ଧେନୁ ଯତ୍ନ ବଳେ;
ଦୁଗ୍ଧ ବହନେ ଅକ୍ଷମ ସେହି ଗାଈ,
ହମ୍ବାରଡ଼ିରେ ଖୋଜଇ ତୁମକୁ ହାବ;
କହିବୁ ହଂସ ! ତୁରିତେ କୃଷ୍ଣେ ଯାଇ,
କୃଷ୍ଣେ ତୁମର ଦୁଃଖିନୀ ସେହି ଗାଈ । ୭୬ ।

ଘନ କଦମ୍ବ ପାଶେ ବାସନ୍ତୀ ବଲ୍ଲୀ ଯାହା,
ଆପଣା ହସ୍ତେ ରୋପିଥିଲେ ହରି ହର୍ଷେ ତାହା;
ପଲ୍ଲବଯୁତ କୁସୁମିତ ସେହି ବଲ୍ଲୀ ଆଜ,
ଦର୍ଶନେ ତାର ଧୈର୍ଯ୍ୟବନ୍ଧ ଯାଏ ଗୋ ଭାଜି;
ମଧୁ ଝରାଇ ସେ କୁସୁମନୟନୁଁ କାନ୍ଦେ ସିନା,
କହାଏ ପୁଣି ଗୋପଯୁବଷ୍ଟରେ କୃଷ୍ଣ ବିନା । ୭୭ ।

ଦେବକୀ ଗର୍ଭୁଁ ସମ୍ଭୂତ ହୋଇ,
ମୁଗ୍ଧ କରିଲେ ଗୋପେ ଗୋପଗୋଷ୍ଠୀ;
ହର୍ଷିତମନେ ବୃନ୍ଦାରଣ୍ୟେ ରଚିଲେ କ୍ରୀଡ଼ା,
ମୁଗ୍ଧପରାଣେ ମିଳିଲେ ଗୋପୀଏ ବରଜି ବ୍ରୀଡ଼ା;
ହାୟ ! ନିଷ୍ଠୁର ଅକ୍ରୂର ସେହି କଂସଦୂତ,
ଧ୍ୱଂସିଲା ସିନା ପ୍ରଣୟ-ହର୍ଷ ଶୁଦ୍ଧ ପୂତ । ୭୮ ।

କୃଷ୍ଣ ଯେବର୍ନ୍ତୁ ତେଜିଲେ ବୃନ୍ଦାବନ,
ଭସ୍ମ ଦୁର୍ଦ୍ଦଶା ମାଡ଼ି ପଡ଼େ ଘନଘନ,
ଚଉର ଆଜ ଜବସଲନ୍ତିକା ପୂର୍ଣ୍ଣ,
ବ୍ରଜ-ପରସର-ହର୍ଷସୌଧ ଚୂର୍ଣ୍ଣ;
ବଚ୍ଛେଦ ଲଭ୍‌ ଦଗ୍‌ଧପରାଣେ ବତାଏ ଦନ,
କହ୍ବୁ ହଂସ ! ଗୋପ ଅଙ୍ଗନା ହର୍ଷହୀନ । ୬୯ ।

ହର୍ଷବଲ୍ଲୀରେ ପୂରତ ବରଜପୁର,
ଏ କାଳେ କୃଷ୍ଣ କଲେ ଆମକୁ ଦୂର;
ଆଘ୍ରାଣି ଆଜ ପୁଷ୍ପିତ ସେହ୍ନ ଲତା,
ଗୋପଅଙ୍ଗନା ହୋଇବୁ ମୂର୍ଚ୍ଛାଗତା;
ଦଣ୍ଡକ ଲଗି ଆସି ଏ ବରଜ ଧାମେ,
କୃଷ୍ଣ ହେ ରଖ ମୃତ୍ୟୁଦୁଆରେ ଆମେ । ୭୦ ।

ରାଜନନ୍ଦନୀ ରାଧା-ଅର୍ଚ୍ଚିତ ପଦ,
ପଲ୍ଲୀବାସିନୀ ହୃଦଧନ ସମ୍ପଦ;
ମତ୍ତ ସେ ଗୋପଅଙ୍ଗନା କାମବାଣେ,
ବଚ୍ଛେଦବାଧା ଅନ୍ତର ସଦା ହାଣେ;
'ବର୍ଜ' ସଦନ କୃଷ୍ଣ ହେ ! ଘନେ ଅନ୍ଧକାରେ,
ଲତା ବେଷ୍ଟିତ କୁଞ୍ଜେ ଚଳଲେ ହର୍ଷେ ବାରେ;
ମାର୍ଗ ବଲୋକ ତୃଷ୍ଣେ,
ନେତେ ନ ଦେଖି କୃଷ୍ଣେ । ୭୧ ।

---

ଜବନ୍ତ ଲତକା—ହୃବଲତା,

ପ୍ରଭଣ

ବର୍ଜନ କଲ ଗୋପ ଅଙ୍ଗନା ସକଳେ,
ନନ୍ଦନରତା ବଚ୍ଛେଦେ ଅଛି ବକଳେ;
କୃଷ୍ଣ ହେ ! ଏତ ତୁମ୍ଭ ଦୂଷଣ ନୁହଇ,
ଶ୍ୟାମ ଅଙ୍ଗରେ ସମ୍ଭବ ତାହା ହୁଅଇ;
ନନ୍ଦତନୟ ମନ୍ଦତନୟ ସମ,
ନର୍ଦୟ ହାୟ ! ନଷ୍ଠୁର ନରମମ;
ପକ୍ଷ ଉଦୟେ ପିକ ଯଥା କାକସଙ୍ଗ ତେଜ,
ପାସୋରଲେ ତଥା ମଧୁପୁର ବାଳା ମୈତ୍ରୀ ହେଜ । ୭୨ ।

ପ୍ରଣୟରସର ରଙ୍ଗମଞ୍ଚ ବରଜ ଧରା,
ପ୍ରୀତି ଅଭିନୟ ନାଟ୍ୟ ରଚଲେ ଗୋପୀଏ ପରା;
ଜାଣି ଶୁଣି କଆଁ ଅଜଣା ସମ,
ହେ ନରମମ;
ନର୍ତ୍ତନରତ ଅଂଗନା ସାଥେ ଥିଲ ଯେ ତୁମେ,
କମ୍ପା ତୁମେ;
କହବୁ ହଂସ ! ବୃନ୍ଦା-ବପିନ-ଚନ୍ଦ୍ର ପାଶେ,
ରାଧା ନାମ ଭୂଲ ରହବଲେ କେସନ ଆଉ କା' ବାସେ । ୭୩ ।

କୁଞ୍ଜକାନନ ବାସୀ ହେ କୃଷ୍ଣ ! ଶୁଣ ହେ କର୍ଣ୍ଣପୁଟେ,
ବଚ୍ଛେଦେ ତବ ଗୋପ ଅଙ୍ଗନା ଅନ୍ତରେ କୋହ ଉଠେ;
ତୁମ୍ଭ ବନା କେ ସାହା,
ନ ମିଳେ ମୁକ୍ତ ରାହା;

---

ନନ୍ଦତନୟ-ଶ୍ରୀକୃଷ୍ଣ; ମନ୍ଦତନୟ-କୋଇଲ

ପ୍ରଣୟ-ମଧୁର ବିରହ-ବିଧୁର ରାଧିକା ମଳିନ ବେଶେ,
ଭ୍ରମେ ଚଉଦିଗେ ସାଧାରଣ ନାରୀ ସମ ଆହା ଅବଶେଷେ ।୭୪

ଶୁଣ ହେ କୃଷ୍ଣ ! ନିଜ ଦୋଷେଁ କିବା ଦୁଃଖଦଗଧା ଆମେ;
ତୁମେ ବା ଦୁଃଖ ହୁତାଶେ ଜାଳୁଛ ଆମକୁ ବିରହ ଧାମେ;
ବିରହ-ହୁତାଶ ଜଳେ ଅବିରତ,
ଦଗଧ ହେଉଛୁଁ ଗୋପୀଏ ନିରତ;
ନିଷ୍ଠୁର ହରି ! ଶୁଣ କେସନ ସେ ଦୁଃଖନିଆଁ,
ଅନ୍ତରେ ଚିହ୍ନ ଉଦୟ ନ ଜଗାଏ କେଜାଣି କିଆଁ ।୭୫ ।

ବିରହ ଦୁଃଖେ ରାଧିକା ନେତ୍ରୁଁ ବହିଣ ଅଶ୍ରୁ ଧାର,
ହ୍ରସ୍ୱ କରିଲା ଯମୁନାରେ ନାଶି ଗୁରୁ ଗୌରବ ତାର;
ସୃଷ୍ଟି କରିଲା ଆନ ଏକ ନଦୀ ସତ୍ତ୍ୱେଁ,
ଦଣ୍ଡ ଦଅଇ କୁପିତେ ଶମନ ତତ୍ତ୍ୱେଁ;
ଶୁଣ ରେ ହଂସ ! ଏ କାଳେ କୃଷ୍ଣ ଆସି,
ନାଶିବେ ରାଧିକା ହୃଦୟ ଦୁଃଖରାଶି ।୭୬ ।

କୁବ୍ଜା ନାୟିକା ପ୍ରଣୟ ଚିନ୍ତ
ଅନ୍ତର ତଳେ ରାଧା,
ହିତ ବା ଅହିତ ବିଚାରରହିତ
ଲଭୁ ବିଚ୍ଛେଦବାଧା,

---

ଶମନ—ଯମ, ଯମୁନାର ଭାଇ; ହୁତାଶ—ଅଗ୍ନି ।

ସତେଲକ୍ଷ

ରୂପଶିଖରେଖା ଶଲଖା ଯେସନ,
ଅନଳେ ନଜକୁ ଦହେ,
କୃଷ୍ଣମଗନା ରାଧିକା ତେସନ
ବଚ୍ଛେଦ ତାପ ସହେ । ୭୭ ।

ପୁଷ୍ପିତ ଆଜ ବୃନ୍ଦାବନ,
ଉଚ୍ଛନ ଗୋପୀବୃନ୍ଦ ମନ;
ନ ସ୍ଥ ରେ ବାଣୀ ଅଧରପୁଟେ,
ଅନ୍ତରେ ଭାବକଣ୍ଠ ଆର ଛୁଟେ;
ଦବସ ରଜମ ଯାପିବୁ କେମନ୍ତେ ଏ ମଧୁମାସେ,
ରସରାଜ ଆଜ ନାହାଁରେ ସଜନ ! ଆମ୍ଭ ପାଶେ । ୭୮ ।

ବନ୍ଦତନୁ ସେ କୁବ୍ଜା ନାୟିକା
କୃଷ୍ଣ କୁଟିଳ ହୃଦେ,
ବସନ୍ତ ରଚଲମୁଦେ ।
ପୁଣ୍ୟ ଅନ୍ତେ ସରଳହୃଦୟା ରାଣ୍ଡ,
କୃଷ୍ଣ କୁଟିଳ ଚତ୍ତ ଭେଦନେ
ସକ୍ଷମ ହୁଏ ନାହିଁ ।
ନବେଦନ କର ହଂସ ରେ ଯାଇ କୃଷ୍ଣେ,
ପଥ ଚାହିଁ ରାଣ୍ଡ ବସି ଅଛୁ ଅତ ତୃଷ୍ଣେ । ୭୯ ।

ପ୍ରେତ ଆବଷ୍ଟ ଭୂଜଗଦଷ୍ଟ ମୂର୍ଚ୍ଛିତ ତନୁ ତା'ର,
କି ଅବା ଅପସ୍ମାର !
ବାଧିଲା ପରାଏ ସଂଜ୍ଞାବନ୍ଧନା ରାଣ୍ଡ
କୃଷ୍ଣପ୍ରଣୟବାଇ;
ଗୁରୁ ଗୁରୁଜନ ଶାନ୍ତ ଲଭିଲେ ହେଲେ,
ମୁରଲୀ ଶବ୍ଦ କର୍ଣ୍ଣେ ପଡ଼ିଲା ବେଳେ । ୮୦ ।

ଅଶୁଭ ଶକୁନ ଚିତ୍ତକୁହରେ ତା'ର
ଅତର୍କିତରେ ଘୋଷିଯାଏ ବାରବାର;
ରାଧାକୁ ବରଜ ଦୂରେ,
ଯାଆ ଉଚ୍ଛଳ ନର୍ମମ ମଧୁପୁରେ;
ରାଧାରାଣୀ ତବ ପ୍ରଣୟ ଆର୍ତ୍ତି,
ନ ପାଇ ତୁମର କୁଶଳ ବାର୍ତ୍ତା;
ଦଗ୍ଧ ପରାଣେ ପଦ୍ମ ଚରଣ ଭଳି ;
ବଞ୍ଚଇ ଦିନ ଆଜି । ୮୧ ।

ସିଦ୍ଧ ପୁରୁଷ ଚରଣ ଯୁଗଳେ ନମ୍ର ଶିରେ,
ତାନ୍ତ୍ରିକ ପାଶେ ଶରଣ କେବେ ବା ପଶଇ ଧୀରେ;
ବୈଦ୍ୟ ଗଣେ
ପ୍ରତି ମୁହୂର୍ତ୍ତି ମିନତି ଭଣେ ।

---

ଶକୁନ—ଲକ୍ଷଣ

ଅଣତରିଶ

ଅଦ୍ରିତନୟା ପଦ୍ମଚରଣ ତଳେ,
ଶରଣ ଲୋଡ଼ଇ ଭାସି ସେ ଦୁଃଖ ଜଳେ;
ଚଞ୍ଚଳ ହେଲେ ମତି,
ହିତକର ବୋଲ କାହାରେ ନ ମଣେ
ବିବ୍ରତ ହୋଇ ଅତି । ୮୨ ।

ହରପ୍ରଣୟୀ ସେ ପଶୁପତି ଶିବ
ଦେବତାହର୍ଷକାରୀ,
କର୍ପୂର-ଆଭାନନ୍ଦୀ ମୂରତି
ରଜତ ଅଦ୍ରିଗୃହୀ;
ତୁମର ଅଙ୍ଗସଙ୍ଗ କାମନା କରି,
ଦୁଃଖିନୀ ରାଧା ଶଙ୍କରପଦେ ସେବେ ଅନ୍ତର ଭରି । ୮୩ ।

ଅଙ୍କନ କରି ତମାଳପତ୍ରେ ମୂର୍ତ୍ତି ତବ,
ବିଶ୍ୱମୋହନ ସ୍ନିଗ୍ଧ ମଧୁର ସେ ଅଭିନବ;
କୃତ୍ରିମ ସେହି ମୂର୍ତ୍ତି ଗଳେ,
ଭୁଜଲତିକାରେ ଛନ୍ଦ ବଳେ;
ମହୀଲୁଣ୍ଠିତା ସଜ୍ଜାବିହୀନା ଆହା
ଦିବସ ରଜନୀ ନ ପାଏ ମୁକ୍ତିରାହା । ୮୪ ।

ତବ ଗୁଣ ଗୁଣି ଦିବସ ଯାମିନୀ ରାଧିକା ଆଳି,
ଚେତନାଶୂନ୍ୟା ଭୂତଳପତିତା ଦୁଃଖ ଭାଳି;

---

ରଜତଅଦ୍ରିଗୃହୀ—କୈଳାସ ପର୍ବତ ଭ୍ରମଣକାରୀ

ଶରଣ

ବିରହ ଅଗ୍ନି ତାପେ ବିଦଗ୍ଧା ଗାତ୍ର,
ନିଜକୁ କୃଷ୍ଣ ମଣି ସେ ହେଲାଣି ବାଇ;
ବିଚ୍ଛେଦ ଯୋଗୁଁ ଅଂଗ ସୁଷମା ହୀନ,
ହୁଅଇ ଦିନକୁ ଦିନ;
ଦୁର୍ଭାଗ୍ୟା ସେ ଆଜ,
ଦମ୍ଭ ଯାଇଛି ଭାଜ । ୮୫ ।

କଂସବିଜୟି ! ସନ୍ତାପ ତାକୁ ଦେଲେହେଁ ଯେତେ,
ତଥାପି ସେ ତୁମ ସଙ୍ଗ ଲୋଡ଼ଇ ପ୍ରାସୋରେ କେତେ ?
ତୁମ୍ଭ ବିହୁନେ ବଜ୍ରକଠିନ
ହେଲ ତା ହିଆ,
ସଖୀଶିରୋମଣି ରାଧିକା ଦୁଃଖ
ବୁଝିବ କିଆଁ ? ୮୬ ।

"କୃଷ୍ଣ ମିଳିବେ ଯୋଗବଳେ", ଏହା କର୍ଣ୍ଣେ ଶୁଣି,
ନିଷ୍ଠା ଆଚରି ରାଧା ଆଜ ଯୋଗ ରଚଇ ପୁଣି;
ବର୍ଜି ସଜନୀସଙ୍ଗସୁଖ,
ଦେଖିବାକୁ ତୁମ ଚନ୍ଦ୍ରମୁଖ;
ସଂଯମ ବ୍ରତ ପାଳନ କରଇ ରାଧା,
ଉପଶମିବାକୁ ଅଙ୍ଗୁଁ ବିରହବାଧା । ୮୭ ।

ଅର୍କତନୟା ନୀଳ ଉତ୍ପଳକାନ୍ତିହର !
ସୁରଶିରୋମଣି ! ବୃନ୍ଦାବନର ପଞ୍ଚଶର !
ବ୍ରଜପୁରବାସୀ ହର୍ଷଦାୟକ !
ନନ୍ଦତନୟ ! ମୁଗ୍ଧନାୟକ !
ଉଚ୍ଚାରି ତୁମ ନାମ ଅହରହ ଶ୍ରଦ୍ଧା ଢାଳି,
କ୍ରନ୍ଦନରତା ରାଣ୍ଡ, କହାଏ ସକଳ ଆଳି । ୮୮ ।

ହରହ ଅଗ୍ନି ତପ୍ତ ଶିଖାର ମଧ୍ୟଭାଗେ,
ହରଣୀ ସମାନ ବନ୍ଧମା ରାଧା, ଦୁଃଖ ଲାଗେ;
ଚଣ୍ଡମଦନ ଦଣ୍ଡେ ଶିକାରୀ ସମ
କୃଷ୍ଣ ହେ ତୁମେ ନିର୍ଦ୍ଦୟ ନିରମମ;
ଜୀର୍ଣ୍ଣ ଶୀର୍ଣ୍ଣ ଅଙ୍ଗ ତାହାର ଦିନକୁ ଦିନ,
ଆଜ ଅବା କାଲ ଜୀବନ ତେଜିବ ଶନ୍ତାଳିନ ।୮୯।

ଚନ୍ଦ୍ରମଣ୍ଡଳ ନୟନପ୍ରାନ୍ତେଁ ଅଗ୍ନିରାଶି,
ଦଗ୍ଧ କରିଲା ଦର୍ପକ ତନୁ ସହସା ଆସି;
ଅବ୍ଧି ସଲିଳେ ଯେସନ ଚନ୍ଦ୍ର ଛାଇ,
ମୂର୍ତ୍ତି ତୁମର ରାଧା ଅନ୍ତରେ ଥାଇ;
ଦର୍ପକର ସେ ଦର୍ପନାଶନେ ଶଙ୍କରସେବା କରେ,
ତେଣୁ ହେ କୁତୁକୀ କୃଷ୍ଣ ! ମଦନ ମାରି ନ ପାରଇ ଖରେ ।୯୦

---

ପଞ୍ଚଶର—କନ୍ଦର୍ପ, ଅବ୍ଧି—ସମୁଦ୍ର, ଦର୍ପକ—କନ୍ଦର୍ପ

ବଛଟ.

ଗୋପ ଅଙ୍ଗନା ନ ଜାଣୁ ହେ ଭାବଗୁଣ,
ଛନ୍ଦ କପଟ ନ ଜାଣୁଁ କୃଷ୍ଣ ! ପୁଣ;
ଅନ୍ତର ଆମ ଅନୁରାଗ ଭରା,
ଆନ କଥା ମନେ ନ ଆସିଇ ପରା;
ଉଦ୍ଧବ ଉପଦେଶ,
ନ ଦିଏ ଶିକ୍ଷା ଲେଶ,
ଶାନ୍ତ ନ ଆଣେ ଚିତ୍ତକୁହରେ ଭକ୍ତ ଉଦ୍ଧବ ଶିକ୍ଷା,
ଦ୍ୱିଗୁଣିତ କରେ ଦୁଃଖ ହେ ହରି ! କରୁଁ ତୁମ ପ୍ରେମଭିକ୍ଷା ।୧୧।

ଉତ୍ତମ ଗୁରୁ ଯୋଗ୍ୟ ଶିଷ୍ୟ ଉଦ୍ଧବ ତବ ଭକ୍ତ,
ଦକ୍ଷ ସଚିବ ପାର୍ଶ୍ୱେ ବସିଜେ ତୁମ୍ଭ ଗୁଣାସକ୍ତ;
ଶମନଭଗିନୀ ଶକ୍ତି ସମାନ ଶୋହେ,
"ବ୍ରଜ ମହାରାଜ" ନାମ ଜନମନ ମୋହେ;
ଏତେବେଳେ ଅବା ରାଧିକା ଗୁହାରି ମାନ,
ତୁମ୍ଭ ବଚନେ ଶୁଣିବ କେ ଅବା କୃଷ୍ଣ ହେ ସୁମହାନ । ୧୨ ।

ବିଭ୍ରମି ବନେ ଦୁଃଖିତ ମନେ ରାଧିକା ଶୀର୍ଣ୍ଣକାୟା,
ଉତ୍କଣ୍ଠିତା ଅଙ୍ଗକାନ୍ତି ଦର୍ଶେ ଚଳଇ ମାୟା;
ବର୍ଜିଛି ଆଜି ଜାଣ,
କ୍ରୀଡ଼ା କୌତୁକ ମାନ;

---

ଶମନଭଗିନୀ—ଯମୁନା

ଉତ୍ପଳ ଯଥା ବିକଶେ ଚନ୍ଦ୍ର କିରଣ ଲଭି,
ବ୍ରଜଚନ୍ଦ୍ରମା ! ତୁରିତେ ଆସ ହେ ତା ଅନୁଭବି;
ତୁମ୍ଭର କର ପରଶେ,
ବିକଶିବ ରାଧା ଅଙ୍ଗକୁମୁଦ ହରଷେ । ୯୩ ।

ତୁମର ଅଙ୍ଗ ସଙ୍ଗ ଲଭିବା ପାଇଁ
କଷ୍ଟେ ଯାପଇ ଦିବସ ରଜନୀ ରାଧା
ଆଶା-ବନ୍ଧନେ ସିନା,
ବଞ୍ଚି ରହିଛି ଦୀନା;
ତୁମର ପ୍ରତ୍ୟାଗମନ ମାର୍ଗ ଚାହିଁ
ଆଶାପ୍ତୀ ପରଣେ ପ୍ରତୀକ୍ଷମାଣା ରାଧା,
ମୁହିଁ ନୟନୁଁ ବାରି,
ଦୁଃଖେ ହୋଇଣ ଝାରି । ୯୪ ।

ଅନୁପମ ଦଶା ଭୋଗଇ ଦୁଃଖେ ରାଧା
କାମବାଣ ପାତେ ଆହ୍ୱାନେ ଦାହି ଦାହି;
କୁମୁଦନେତ୍ରା ଭାବନା ହୋଇଛି ଭଙ୍ଗ
ଇଚ୍ଛେ କେବଳ ତୁମର ଅଙ୍ଗ ସଙ୍ଗ;
ବଞ୍ଚାଏ ଜୀବ କେବଳ ତୁମର ଆଶା ସହଚରୀ ସିନା,
ମୁହିଁ ସକଳ ଆଳି ଆଜ ରାଧା, ହୋଇଛି ବିଷାଦ ଲୀନା ।୯୫।

---

ଉତ୍ପଳ—ଭଇଁ

ଚଉତିରିଶ

ରାସକେଳ ରସ ଗଭୁର କୃଷ୍ଣ ! ଦେଖ ସତ୍ୱର ଆସି
ପ୍ରାକ୍ତନ ନବ ପ୍ରଣୟାବଦ୍ଧ ରାଧିକା ଦୁଃଖରାଶି
ଶତଧିକ୍କାର ପ୍ରଣୟେ ତାହାର,
ଭଗ୍ନ ସେ ଯେ ଆଜ ମୃତ୍ୟୁଦୁଆର;
ତଳେ ହେଲେ ତୂଳା ତାର ନାସାପୁଟ ପାଶ
କଂପିତ ନୋହେ—ଲଭିଲା ସ୍ୱର୍ଗବାସ ? । ୯୬ ।

ଚକ୍ଷୁଯୁଗଳ ନିମୀଳିତ ଆଜ ତା'ର,
ଉନ୍ମାଦେ କଥା ଜଳ୍ପଇ ବାରବାର;
ବର୍ଣ୍ଣି ନୋହେ ସେ ଦୁଃଖମାନ,
ଦର୍ଶନେ ଅଶ୍ର ଉଠେ ପରାଣ
ପ୍ରଣୟ ଆବେଗ ଭରେ,
ଝଲପଇ ଥରେ ଥରେ;
ହଂସ ରେ ! ରାଧା ଚିତ୍ତକୁହରେ ବେଦନା ଉଗ୍ର ଫୁଟେ,
ଚଳ ଚଞ୍ଚଳେ ଦିଅ ଏ ବାର୍ତ୍ତା କୃଷ୍ଣ ଶ୍ରବଣପୁଟେ । ୯୭ ।

ସତେ ସେ କୃଷ୍ଣ ବାହୁଡ଼ିବେ ମୋର ପାଶ,
ମେଣ୍ଟିବ ମୋର ମନର ସକଳ ଆଶ;
ବର୍ଣ୍ଣି ନୋହେ ସେ ଅତୀତ ପ୍ରଣୟ କଥା,
ଅକ୍ଷୟ ସେ ଯେ ଦିବ୍ୟ, ମଧୁର ତଥା;
ଏସନ ପ୍ରଣୟେ ରସିକ କୃଷ୍ଣ ଉଦାସୀନ ହେଲେ ସିନା,
ଶନ୍ତ ଅତୀତ ପ୍ରଣୟ ଲକ୍ଷ୍ମାପ୍ରାପ୍ତା ଆଜ ଏ ଦୀନା । ୯୮ ।

ରାଧାର କଷ୍ଟ ହେଲ ଗରିଷ୍ଠ ତୁମ୍ଭ ବିନା,
ପ୍ରଣୟପୂର୍ଣ୍ଣ ହୃଦୟ ଚୂର୍ଣ୍ଣ ହୋଇବ ପିନା ।
ଚନ୍ଦ୍ରେ ସେ ଏତେ କମ୍ପା ନ ଆସ ହରି,
ରାଧାର-ପ୍ରଣୟ-ଉତ୍ସ ଗଲାଣି ସରି,
ଆମ୍ଭର ଶେଷବାର୍ତ୍ତା କୃଷ୍ଣ ! ଏହି,
ବଞ୍ଚାଅ ତାରେ ଦର୍ଶନେ ବାରେ ଦେଇ । ୯୯ ।

ଏହି ଏ କୁଞ୍ଜବନେ,
କ୍ରୀଡ଼ା କୌତୁକେ ମତ୍ତ କୃଷ୍ଣ ସତତ ହର୍ଷମନେ;
ହର୍ଷ ମାନସେ ଆଳି,
ଯାଉଥିଲେ କାଳ କୁଞ୍ଜବିପିନେ କୃଷ୍ଣପ୍ରଣୟ ଢାଳି;
ଏହି ସେ କୁଞ୍ଜବନ,
କୃଷ୍ଣବିରହେ ଦୁଃଖ ଭୋଗଇ ଅନ୍ତରେ ଅଗଣନ;
ପ୍ରଭୁର ସଦୟ ଦୃଷ୍ଟି—
ବିନା ଏ ଜଗତେ ଅନ୍ତରେ କା’ରି ହୁଏ କି ହର୍ଷ ସୃଷ୍ଟି ?
ସଦୟ ହୃଦୟ ହଂସ !
କଂସ ନଗରୁ ବେଗେ ବାହୁଡ଼ାଅ ଯଦୁକୁଳ ଅବତଂସ ।୧୦୦।




ଛତଣ

# ହଂସଦୂତମ୍

ଦୁକୂଳଂ ବିଭ୍ରାଣୋ ଦଳିତ-ହରିତାଳ-ଦ୍ୟୁତିହରଂ ।
ଜବାପୁଷ୍ପଶ୍ରେଣୀରୁଚିରୁଚିରପାଦାମ୍ବୁଜତଳଃ ॥
ତମାଳଶ୍ୟାମାଙ୍ଗୋ ଦରହସିତଲୀଳାଞ୍ଚିତମୁଖଃ,
ପରାନନ୍ଦାଭୋଗଃ ସ୍ଫୁରତୁ ହୃଦି ମେ କୋଽପି ପୁରୁଷଃ । ୧ ।

ଯଦା ଯାତୋ ଗୋପୀହୃଦୟମଦନୋ ନନ୍ଦସଦନା—
ନ୍ମୁକୁନ୍ଦୋ ଗାନ୍ଧିନ୍ୟାସ୍ତନୟମନୁବନ୍ଧନ୍ମଧୁପୁରୀଂ ।
ତଦାମାଙ୍କ୍ଷୀଚ୍ଚିନ୍ତାସରିତି ଘନଘୂର୍ଣ୍ଣା ପରିଚୟୈ—
ରଗାଧାୟାଂ ବାଧାମୟପୟସି ରାଧାବିରହିଣୀ । ୨ ।

କଦାଚିତ୍ ଖେଦାଗ୍ନିଂ ବିଘଟୟିତୁମନ୍ତର୍ଗତମସୌ,
ସହାଳୀଭିର୍ଲେଭେ ତରଳିତମନା ଯାମୁନତଟୀଂ ।
ଭବଦସ୍ୟାଶ୍ଚିତ୍ତଂ ପ୍ରକଟିତକୁଟୀରବକକଳନା—
ଦବସ୍ଥାଂ ତସ୍ତାର ସ୍ଫୁଟମଥ ସୁଷୁପ୍ତେଃ ପ୍ରିୟସଖୀଂ । ୩ ।

ତଦା ନିଷ୍ପନ୍ଦାଙ୍ଗୀ କଳିତନଳିନୀପଲ୍ଲବକୁଳୈଃ
ପରୀଣାହାତ୍ ପ୍ରେମ୍ଣାମକୁଶଳଯୁତାଶଙ୍କି ହୃଦୟେ ।
ଦୃଗମ୍ଭୋ ଗମ୍ଭୀରୀକୃତ ମିହିରପୁତ୍ରୀଲହରିଭି—
ର୍ବିଲୀନା ତୂଳୀନାମୁପରି ପରିବବ୍ରେ ପରିଜନୈଃ । ୪ ।

ତତସ୍ତାଂ ନ୍ୟସ୍ତାଙ୍ଗୀ ମୃଦୁସଲିଳଭାଜଃ କମଳିନୀ—
ର୍ଦଳୌଘୈଃ କାଳିନ୍ଦୀସଲିଳଶିଶିରୈର୍ବୀଜିତତନୁଂ ।
ପରାବୃତ୍ତଶ୍ୱାସାଙ୍କୁରକଳିତକଣ୍ଠୀଂ କଳୟୁତାଂ
ସଖୀ ସନ୍ଦେହାନାଂ ପ୍ରମଦଭରଶାଳୀ ଧ୍ୱନିରଭୂତ୍ । ୫ ।

ସର୍ବଂଶରଣ

ନିଧାୟାଙ୍କେ ପଙ୍କେରୁହଦଳବଟଙ୍କସ୍ୟ ଲଳିତା ।
ତତୋ ରାଧାଂ ମାରାହରଣସରଣୀ ନ୍ୟସ୍ୟ ଚରଣୌ ॥
ମିଳନ୍ତୀଂ କାଳିନ୍ଦୀ ପୁଳିନଭୁବି ଖେଳାଞ୍ଚିତଗତିଂ ।
ଦଦର୍ଶାଗ୍ରେ କଞ୍ଚିନ୍ମଧୁରଚରୁତଂ ଶ୍ୱେତଗରୁତମ୍ । ୬ ।

ତଦାଲୋକୋତ୍ସୋକୋଚ୍ଛ୍ୱାସିତ ହୃଦୟା ସାଦରମସୌ ।
ପ୍ରଣାମଂ ଶଂସନ୍ତୀ ଲଘୁ ଲଘୁ ସମାସାଦ୍ୟ ସବିଧଂ ॥
ଧୃତୋତ୍କଣ୍ଠା ସଦ୍ୟୋ ହରିସଦସି ସନ୍ଦେଶହରଣେ
ବରଂ ଦୂତଂ ମେନେ ଭ୍ରମିତଲଳିତଂ ହନ୍ତ ଲଳିତା । ୭ ।

ଅମର୍ଷାତ୍ପ୍ରେମେଷାଂ ସପଦି ଦଧତୀ କଂସମଥନେ ।
ପ୍ରବୃତ୍ତା ହଂସାୟ ସ୍ୱମଭିଲଷିତଂ ଶଂସିତୁମସୌ ॥
ନ ତସ୍ୟା ଦୋଷୋଽୟଂ ଯଦି ଚ ବିହଗଂ ପ୍ରାର୍ଥିତବତୀ ।
ନ କସ୍ମିନ୍ ବିଶ୍ରମ୍ଭଂ ଦିଶତି ହରିଭକ୍ତିପ୍ରଣୟିତା । ୮ ।

ପତଙ୍ଗେଷୁ ପ୍ରାୟୋ ବିରଚୟସି ତୋୟେଷୁ ବସତିଂ ।
ପ୍ରମୋଦଂ ନାଳୀକେ ବହସି କ୍ଷଣଦାସ୍ୱା ସ୍ୱପିଷି ॥
ତତୋଽହଂ ଦୁଃଖାର୍ତ୍ତା ଶରଣମବଳା ତ୍ୱାଂ ଗତବତୀ ।
ନ ଭିକ୍ଷା ସତ୍ପକ୍ଷେ ବ୍ରଜତି ହି କଦାଚିଦ୍ବିଫଳତାଂ । ୯ ।

ଚିରଂ ବିସ୍ମୃତ୍ୟାସ୍ମାନ ବିରହଦହନଜ୍ୱାଳବିକଳାଃ ।
କଳାବାନ୍ ସାନନ୍ଦଂ ବସତି ମଥୁରାୟାଂ ମଧୁରିପୁଃ ॥
ତଦେନଂ ସନ୍ଦେଶଂ ସ୍ୱମନସି ସମାରୋପ୍ୟ ନିଖିଳଂ ।
ଭବାନ୍ କ୍ଷିପ୍ରଂ ତସ୍ୟ ଶ୍ରବଣପଦବୀଂ ସଙ୍ଗମୟତୁ । ୧୦ ।

ନରସ୍ତ ପ୍ରତ୍ୟୁହଂ ଭବତୁ ଭବତୋ ବର୍ମ୍ନ ଶିବଂ ।
ସମୁତ୍ତିଷ୍ଠ କ୍ଷିପ୍ରଂ ମନ ମୁଦମାଧାସ୍ୟ ସଦୟଂ ॥
ଅଧାସ୍ତାଦ୍ଧାବନ୍ତୋ ଲଘୂଲଘ୍ ସମ୍ମୁଖନନୟୁନୈ-
ର୍ଭବନ୍ତଂ ଶଂସନ୍ତଂ କୁତୁକତରଳା ଗୋପଶିଶବଃ । ୧୧ ।

କଟଶାଗ୍ରେତ୍ତଂସୋଽସୌ କଠିନମଣ୍ଡନା ଦାନପଣ୍ଡନା ।
ଯସ୍ୟା·ନଗର୍ୟ୍ୟ ତୂର୍ଣ୍ଣଂ ପଶୁପରମଣୀଜ୍ଞାବରପତିଃ ॥
ତସ୍ୟା ଗନ୍ତବ୍ୟା ତେ ନିଖିଳଜଗଦେକପ୍ରଥିତସ୍ୟା ।
ପଦବ୍ୟା ଭବ୍ୟାନାଂ ତିଳକ କଳ ଦ ସାର୍ହନଗସ୍ଥ । ୧୨

ଗଳଦ୍ବାଷ୍ପସ୍ରୋତପ୍ଲୁତଧବଳଗଣ୍ଡା ମୃଗଦୃଶୋ ।
ବିଦୂୟନ୍ତେ ଯତ୍ର ପ୍ରବଳମଦନା ବେଶବିବଶାଃ ॥
ଭୂୟସ୍ୱା ବିଜ୍ଞାତବ୍ୟା ହରିଚରଣସଙ୍ଗପ୍ରଣୟିନୋ ।
ଧ୍ରୁବଂ ସା ଚମ୍ପାଙ୍ଗୀ ରତିଦକ୍ଷସିଦ୍ଧାଙ୍ଗସ୍ୟ ପଦବ୍ୟା । ୧୩ ।

ପିବନ୍ ଜମ୍ବୁଶ୍ୟାମଂ ମିହିରଦୁହିତୁର୍ବାରିମଧୁରଂ ।
ମୃଣାଳୀଭୃଙ୍ଗାନୋ ହ୍ରିମକରକଳାଃ କୋମଳରୁଚଃ ॥
କ୍ଷଣଂ ହୃଷ୍ଟସ୍ତିଷ୍ଠନ୍ ନବଡ ବଶିଖେ ଶାଖିନଶିଖେ ।
ସୁଖେନ ପ୍ରସ୍ଥାନଂ ରଚୟନ୍ତୁ ଭବାନ୍ ବୃନ୍ଦନଗରେ । ୧୪ ।

ବଳାଦାସ୍କନ୍ଦନ୍ତୀଂ ରଥପଥିକମନ୍ଦୂର ମିକ୍ଷିତଂ ।
ବିଦୂରାଦାଖ୍ୟାତସ୍ତିରନୁପମୌ ଯେନ ରମଣଂ ॥
ତମାଦୌ ପନ୍ଥାନଂ ରଚୟ ଚରିତାର୍ଥା ଭବତୁ ତେ ।
ବିରାଜନ୍ତେ·ସର୍ବୋପରି ପରମହଂସସ୍ଥିତିରସ୍ୟମ୍ । ୧୫ ।

ଅଣସ୍ତଲଣ

ଅକସ୍ମାଦସ୍ମାକଂ ହରିରପହରନ୍ନଂଶୁକଭରଂ ।
ସମାରୂଢୋ ଗୂଢପ୍ରଣୟପୁଲହସ୍ତଃ କନ୍ଦଳୟିତୁଂ ॥
ତବଶ୍ରାନ୍ତସ୍ୟାନ୍ତଃ ସ୍ଥଗିତରବିବିମ୍ବଃ କିଶଳୟୈଃ ।
କଦମ୍ବଃ କାଦମ୍ବ ! ତ୍ରିଶତମବଲମ୍ବଃ ସମଭବତ୍ । ୧୬ ।

କରନ୍ତୀ ଲାବଣ୍ୟଂ ଦିଶିଦିଶି ଶିଖଣ୍ଡସ୍ତବକିନାଂ ।
ଦଧାନା ସାଧୀୟଃ କନକକମଳଦ୍ୟୋତିବସନଂ ॥
ତମାଳ ଶ୍ୟାମାଙ୍ଗୀ ସରଳମୃଦୁଲୋନ୍ମିତମୁଖୀ ।
ଜଗୌ ଶସ୍ତଂ ଯସ୍ୟ ପ୍ରକଟପରମାନନ୍ଦ-ଲହରୀ । ୧୭ ।

ତସ୍ୟାଭୂୟଃ କ୍ରୀଡାରଭସବଶକସଦ୍‌ବଲ୍ଲଭବଧୂ-
ବପୁର୍ବଲ୍ଲୀ-ଭ୍ରଶ୍ୟନ୍ ମୃଗମଦକଣ-ଶ୍ୟାମଳିକୟା ।
ସ୍ୱଧାତବ୍ୟା ହଲ୍ଲୀଷକଦଳିତ ମଲ୍ଲୀଲତିକୟା ।
ସମନ୍ତାଦୁଲ୍ଲାସସ୍ତବ ମନସି ରୁଧଷ୍ଠଳିକୟା । ୧୮ ।

ତଦନ୍ତେ ବାସନ୍ତୀବିରଚିତମନଙ୍ଗୋତ୍ସବକଳା
ଚତୁଃଶାଳଂ ଶୌରେଃ ସ୍ଫୁରତି ନ ଦୃଶୌ ତସ ସ୍ୱକରେଃ ।
ତଦା ଲୋକୋଦ୍ଭେଦିପ୍ରମଦଭରବିସ୍ଫାରିତଗତି—
ସ୍ୱୈପ୍ୟେ ଜାତେ ତାବତ୍ତ୍ୱୟି ବତ ହତା ଗୋପବନିତାଃ । ୧୯ ।

ମମ ସ୍ୟାଦର୍ଥାନାଂ କ୍ଷତିରିହ ବିଳମ୍ବାଦ୍ ଯଦପି ତେ ।
ବିଲୋକୋଥାଃ ସର୍ବଂ ତଦପି ହରିକେଳିସ୍ଥଳମିଦଂ ॥
ତବେୟଂ ନ ବ୍ୟର୍ଥା ଭବତୁ ଶୁଚିତା କଃ ସନ୍ତୁ ସଖେ ।
ଗୁଣୋ ନ ଷ୍ଠାଣୁରହିଁଷି ମତମନବେଶାପ୍ସୁ ନ ଭବେତ୍ । ୨୦ ।

ସ୍କଳଶ

ସକୃଦ୍ ବଂଶୀନାଦଶ୍ରବଣମିଳତାଶ୍ୱାରବନତା—
ରହଃ କ୍ରୀଡ଼ାସାକ୍ଷୀ ପ୍ରଶ୍ରୟପଦଲତା ସଦ୍ମ ସୁଭଗଃ ।
ସ ଧେନୂନାଂ ବନ୍ଧୁର୍ମଧୁମଥନଖଟ୍ୱାପ୍ରେତଶିଳଃ
କରିଷ୍ୟତ୍ୟାନନ୍ଦଂ ସପଦି ତବ ଗୋବର୍ଦ୍ଧନଗିରିଃ । ୨୧ ।

ତମେବାଦ୍ରିଂ ଚନ୍ଦ୍ରାଙ୍କିତକରପରିଷ୍ୱଙ୍ଗରସିକଂ
ମହୀ ତସ୍ୟେ ଶଙ୍କେ ମହିଶିଖରିଣାଂ ଶେଖରତୟା ।
ଅଭିନ୍ନଂ ଜ୍ଞାତିନାଂ ନନୁ ହରିହସ୍ତଂ ଯଃ ପରିଭବନ୍
ଯଥାର୍ଥଂ ସ୍ୱଂ ନାମ ବ୍ୟଧିତ ଭୂବ ଗୋବର୍ଦ୍ଧନ ଇତି । ୨୨ ।

ତମାଳସ୍ୟାଲୋକାଦ୍ ଗିରିପରିସରେ ସନ୍ତି ଚପଳାଃ
ପୁଳିନ୍ଦ୍ୟୋ ଗୋବିନ୍ଦ ସ୍ମରଣ ରଭସୋତ୍ତପ୍ତ ବପୁଷଃ ।
ଶନୈସ୍ତାସାଂ ତାପଂ କ୍ଷଣମପନୟନ୍ ଯାସ୍ୟତି ଭବା-
ନବଶ୍ୟ କାଳିନ୍ଦୀସଲିଳଶିଶିରୈଃ ପକ୍ଷପବନୈଃ । ୨୩ ।

ତଦନ୍ୟେ ଶ୍ରୀକାନ୍ତସ୍ମରସମରଧାଟୀପୁଲକିତା
କଦମ୍ବାନାଂ ବାଟୀ ରସିକ ପରିପାଟୀଂ ସ୍ଫୁଟୟତି ।
ଉଦାସୀନସ୍ତାସାଂ ନ ଯଦି ପରିତୋ ନନ୍ଦସି ତତୋ
ବଭୂବ ବ୍ୟର୍ଥା ତେ ଘନରସ-ନବାସ-ବ୍ୟସନିତା । ୨୪ ।

ଶରନ୍ ମେଘଶ୍ରେଣୀ-ପ୍ରତିଭଟମରିଷ୍ଟାସୁରଶିର-
ଶ୍ଚିରଂ ଶୁଷ୍କଂ ବୃନ୍ଦାବନ-ପରିସରେ ଦ୍ରକ୍ଷ୍ୟତି ଭବାନ୍ ।
ଯଦାରୋଢୁଂ ଦୂରାତ୍ ମିଳତି କଳ କୈଳାସଶିଖର-
ଭ୍ରମାକ୍ରାନ୍ତସ୍ୱାନ୍ତୋ ଗିରିଶ-ସୁହୃଦଃ କଙ୍କରଗଣଃ । ୨୫ ।

ଏକସ୍କନ୍ଧ

ରୁବନ୍ ଯାନ୍ତି ସ୍ୱୈରଂ ଚରମଦଶୟା ଚୂର୍ମ୍ମିତତନୁରେ
ନିତମ୍ବିନ୍ୟୋ ବୃନ୍ଦାବନଭୁବ ସଖେ ! ସନ୍ତୁ ବଦବଃ ।
ପରାବର୍ତ୍ତିଷ୍ୟନ୍ତେ ଭୁଜଗମ୍ପରକନ୍ଦୂପୁରଭବାତ୍
ତବାଧ୍ୱ'ନାନ୍ତ୍ରାସାଂ ବନ୍ଧୁରପି ଗତାଃ ଷିଦ୍ରମସବଃ । ୨୬।

ଭ୍ରମାସୀନଃ ଶାଖାନ୍ତର ମିଳତ ଚନ୍ଦ୍ରାଞ୍ଚିଷି ସୁଖଂ
ଦଧୀଥା ଭାଣ୍ଡୀରେ କ୍ଷଣମପି ଘନଶ୍ୟାମଳରୁଚେ ।
ତତୋ ହଂସୌ ବିଭ୍ରାନ୍ତିଖିଳ ନଭସଶ୍ଚିହ୍ନମିଷୟା
ସବର୍ଣ୍ଣିଷ୍ଟଂ ବିଷ୍ଣୁଂ ଦଳତଦର ଚନ୍ଦଂ ଭୁଜଯୁତା । ୨୭ ।

ଭ୍ରମସ୍ତାଭର୍ନୈର୍ନୈର୍ବିରଳବମଳପ୍ରେମସକଳୈ-
ର୍ମ୍ମହ୍ ପିକ୍ଷସ୍ତମ୍ମାଂ ଚଟୁର ଚତୁରାସ୍ୟ ସ୍ଥିତିଭୁବଂ ।
କଳ୍ପାଥାଃ ବଖ୍ୟାତଂ ସ୍ତୁଟମିହ ଭବଦବା'ଞ୍ଛବରଥଂ
ପ୍ରବଷ୍ଟଂ ମଂସ୍ୟନ୍ତେ ଶଧିମଠବାଦେବ୍ୟସ୍ତୁପିଗତେ । ୨୮ ।

ଜଦଞ୍ଚନ୍ନେନାମ୍ନଃ-ପ୍ରସରଳହସ୍ତ-ପିଚ୍ଛିଳପଥ-
ସ୍ଖଳତ୍ ପାଦନ୍ୟାସ-ପ୍ରଣିହ୍ନିତ-ବଳମ୍ଭାକୁଳଧିୟଃ —
ହରୌ ସସ୍ମିନ୍ଦ୍ରେ ଭବତ ଯମୁନାକୂଳଗମନ—
ସ୍ପୃହାକ୍ଷିପ୍ତା ଗୋପ୍ୟୋ ଯଯୁରନୁପଦଂ କାମପି ଦଶାଂ । ୨୯ ।

ମୃହୁର୍ଲାସ୍ୟକ୍ରୀଡ଼ା-ପ୍ରମଦମିଳଦାହୋପୁରୁଷିକା-
ବିକାଶେନ, ଭ୍ରଷ୍ଟୈଃ ଫଣିମଣିକୁଲୈର୍ଧ୍ୟମଳରୁଚେଃ ।
ପୁରସ୍ତସିନ୍ଧୀପଦ୍ମମକୁସୁମକଞ୍ଜଳ୍କସୁରଭୌ
ଭୁଷ୍ଟା ପେପ୍ସ୍ୟଂ ପୃଷ୍ଣେୟ ମଧୁରମୁଦକଂ କାଳିୟହ୍ରଦେ । ୩୦ ।

**ବସ୍ତ୍ରାଳଣ**

ତୃଣାବର୍ତ୍ତାଘଟେର୍ବିରହଦବସନ୍ତାପିତତନୋଃ
ସଦାଖ୍ୟାଶ୍ଚ ବୃନ୍ଦପ୍ରଣୟିବହୁମାନୋନ୍ନତପଦଃ ।
ସ୍ୱଧାତବ୍ୟା ନଦ୍ୟସ୍ତବକଭରସମ୍ବର୍ଦ୍ଧିତଶୁଚ —
ସ୍ଥସ୍ଥା ବୃନ୍ଦାଦେବ୍ୟାଃ ପରମସ୍ୱନସ୍ମାଦ୍‌ବନ୍ଦନସ୍ୱଧିଃ । ୩୧ ।

ଇତି ସ୍ୱାନ୍ତା କେକାକୃତଶ୍ୱରୁତମେକାଦଶବନଂ
ଧନାଭୂତଂ ରୂଢେ ବ୍ରଜ ମଧୁବନଂ ଦ୍ୱାଦଶମିଦଂ ।
ପୁର ଯସ୍ମିନ୍ନାସ୍ତେ ଯଦୁକୁଳଭୂବାଂ ନର୍ମଳସଣୋ—
ଭରାଣାଂ ଧାରାଭର୍ଧବଳତଧରଂସୀପରସର । ୩୨ ।

ନକେତୈ ରକାଣ୍ଡୀ ରେଶଣରେଶଭଜମ୍ବୁପ୍ରଭୃତିଭଟୈ-
ରବଷ୍ଟମ୍ଭସ୍ତମ୍ଭାବଳଵଳୀସିତୈଃ ପୁଷ୍ପିତବନା ।
ନବସ୍ଥା କାଳନ୍ଦୀତଟଭୂବ ତବାଧ୍ୱାସିତସଖେ
ସମନ୍ତାଦାନନ୍ଦଂ ମଧୁରଜଳବୃନ୍ଦା ମଧୁପୁରୀ । ୩୩ ।

ବୃଷଃ ଶମ୍ଭୋର୍ଯସ୍ୟାଂ ଦଶତି ନବମେକନ୍ଧ ଯବସଂ
ବରଶ୍ରେଷ୍ଠୈରନ୍ୟସ୍ମିନ୍ ଗିଳତି କଳହଂସୋ ବିସଲତାଂ ।
କ୍ୱଚିତ୍ ଜୈଷ୍ଣାରାତେଃ କବଳୟତି କେକୀ ଵିଷଧରଂ
ବଲିତ୍ରେ ଶଲ୍ଲକ୍ୟା ବଳରସୁକଶ୍ଚ ପଲ୍ଲବମିତଃ । ୩୪ ।

ଅବୋଧଂସ୍ତାଃ କାସ୍ୱାନ୍ନସ୍ୱ ସ୍ୱଗଳତାଂ ପ୍ରଚ୍ଛଦପଟୀଂ
ବିମୁକ୍ତାମଙ୍କାସୀଃ ପଥି ପଥି ନ ମୁକ୍ତାବଳିମପି ।
ଅସ୍ମି ଶ୍ରୀଗୋବର୍ଦ୍ଧନଶ୍ରବଣମଦିରାମତ୍ତହୃଦୟେ !
ସନ୍ତିତି ଖ୍ୟାତିଂ ତେ ହସନ୍ତି କୁଳଟାନାଂ କୁଳମିଦଂ । ୩୫ ।

ଭେଷ୍ଟୀକଣ

ଅପସବ୍ୟଂ ବିଭ୍ରାଣା ପଦମଧୃତ ଲକ୍ଷାରସମସୌ
ପ୍ରୟାତାହଂ ମୁଗ୍‌ଧେ ! ବିରମ ମମ ବେଶୈଃ କିମଧୁନା ।
ଅମନ୍ଦାଦାଶଙ୍କେ ସଖି ପୁରପୁରନ୍ଧ୍ରୀ କଳକଳା—
ଦଳନ୍ଦାଗ୍ରେ ବୃନ୍ଦାବନକୁସୁମଧନ୍ୱା ବ୍ରଜସୁତେ । ୩୬ ।

ଅୟଂ ଲୀଳାପାଙ୍ଗସ୍ନପିତପୁରବୀଥୀ ପରିସରେ ।
ନବାଶୋକୋତ୍ତଂସଧ୍ୱସ୍ତଳନ୍ତ ପୁରତଃ କଂସବିଜୟୀ ।
କିମସ୍ମାନେତସ୍ମାନ୍ମଣିଭବନଗ୍ରୁଷ୍ଟ ଦ୍‌ବନୁଦସ୍ତି
ଭୃମେକା ସ୍ତବ୍‌ଧାକ୍ଷୀ ସ୍ଥଗୟସି ଗବାକ୍ଷାବଳି ମପି । ୩୭ ।

ମୁହୁଃ ନୈନ୍ୟାଂ ଦୃଷ୍ଟିଂ ବହସି ରହସି ଧ୍ୟାୟସି ସଦା
ଶୃଣୋଷି ପ୍ରତ୍ୟକ୍ଷଂ ନବପରିଜନଜ୍ଞାପନଶଠଂ ।
ତତଃ ଶଙ୍କେ ପଙ୍କେରୁହଦଳମୁଖୀ ଶ୍ୟାମଳରୁଚଃ
ସ ଯନ୍ନାମୂତ୍ତଂସ-ସ୍ତବନପୁନବୀଥୀପଥିକତାଂ । ୩୮ ।

ବିଲଜ୍ଜଂ ମାରେଗାରବ୍ଧ ସଖି ପୁନର୍ଯାସ୍ୟନ୍ତ ଦ୍ୱର—
ସ୍ତବାପାଙ୍ଗ କ୍ରୀଡ଼ା-ନଟଡ଼ପରିଚର୍ଯ୍ୟା ଗ୍ରନ୍ୱଣତାଂ ।
ଇତି ସ୍ୱୈରଂ ଯସ୍ୟା ମଥି ପଥି ମୁରାରେରଭିନବ —
ପ୍ରଦେଶେ ନାସ୍ତ୍ରିଣାଂ ରତିରଭସଜଳ୍ପା ବବୃଧିରେ । ୩୯ ।

ସଖେ ସାକ୍ଷାଦ୍ଦାମୋଦରବଦନଚନ୍ଦ୍ରାବକଳନଂ
ସ୍ଫୁରଦ୍‌ ପ୍ରେମାନନ୍ଦ-ପ୍ରକରଲହରୀ-ଚୁମ୍ବିତଧିୟଃ ।
ମୁହୁସ୍ତସ୍ୟାଖ୍ୟାସମ୍ପଦସ୍ନ-ଶିରୋନ୍ୟସ୍ତ ବିପଦ—
ସ୍ତବାଷ୍ଟ୍‌ଣୋଗନନ୍ଦଂ ବଦଧନ୍ତ ପୁରସ୍ତ ପୌରବନିତା । ୪୦ ।

ଚଜ୍ଞସଲଶ

ଅଥ କ୍ଷାମଂ କ୍ଷାମଂ କ୍ରମଦଟନୟା ସଙ୍କଟତର—
ନ୍ନିବାଧାନ୍ ବୃଷ୍ଣୀନାମନୁସର ପୃଶ୍ନମଧ୍ୱ ବସିଠାଂ ।
ମ୍ବସତେର୍ଯତ୍ର ସ୍ଥଗିତଗଣନାଭିର୍ବିଜୟତେ
ପତାକାଭିଃ ସନ୍ତର୍ପିତ ଭୁବନମନ୍ତଃ ପୁରବରଂ । ୪୧ ।

ଯଦୁତ୍ତୁଙ୍ଗେ ତୁଙ୍ଗସ୍ଫଟିକରଚିତାଃ ସନ୍ତି ପଟଳୋ
ମରାଳା ମାଣିକ୍ୟପ୍ରକର ଘଟିତ କ୍ରୌଞ୍ଚଚରଣାଃ ।
ସୁହୃଦ୍‌ବୁଦ୍ଧ୍ୟା ହଂସଃ କଳିତ ମଥୁର ସ୍ୟାମ୍ବୁଜଭ୍ରୁବଃ
ସ୍ୱମର୍ଯ୍ୟାଦାଂ ଯୋଷାଂ ସପଦି ପରିଚର୍ଯ୍ୟାଂ ବିଦଧତି । ୪୨ ।

ଚିରନ୍ମୃଗ୍ୟନ୍ତୀନାଂ ପଶୁପରମଣୀନାମଟିକୁଳୈ—
ରଲବ୍ଧଂ କାଳନ୍ଦୀ ପୁଳିନ-ବିପିନେଲ୍ଲନମଭିତଃ ।
ସଦା ଲେକୋଚ୍ଛ୍ୱାସ-ସ୍ମିତପରିଚିତାସ୍ୟଂ ସହଚର
ସ୍ଫୁରନ୍ତଂ ଦ୍ରକ୍ଷିଷ୍ୟେ ପୁନରପି କମଲେ ମୁରଭିଦଂ । ୪୩ ।

ବିଷାଦଂ ମାକାର୍ଷୀ ଦ୍ରୁତମବତଥବ୍ୟାହୃତିରସୌ
ସମାଗନ୍ତାରାଧେ ଧୃତନବଶିଖଣ୍ଡସ୍ତବ ସଖା ।
ଇତି ବ୍ରୂତେ ଯସ୍ୟାଂ ଶୁକମିଥୁନମିନ୍ଦ୍ରାନୁଜକୃତେ
ଯଦାଶ୍ୱାସବୃନ୍ଦୈ ରୁପଧୃତମଭୂଦ୍ ବଲ୍ଲବକରେ । ୪୪ ।

ଘନଶ୍ୟାମଭ୍ରାମ୍ୟତ୍ୟୁପରି ହରିହର୍ମ୍ୟସ୍ୟ ଶିଖିଭିଃ
କୃତ ପ୍ରେଙ୍ଖା ମୁଗ୍ଧୈରଗୁରୁରଚିତା ଧୂମଲତିକା ।
ତଦାଲୋକାତ୍ଧୀର ସ୍ଫୁରତି ତବ ଚେତ୍ ମାନସରୁଚି—
ର୍ଜିତଂ ତର୍ହି ସ୍ୱୈରଂ ଜଳସହନବାସ ପ୍ରିୟୁତସ୍ୱା । ୪୫ ।

ପଞ୍ଚସ୍ଥଳଣ

ତତୋ ମଧ୍ୟେ କକ୍ଷଂ ପ୍ରତିନବଗବାକ୍ଷସ୍ତବକିତଂ
ଚଳନ୍ମୁକ୍ତାଲମ୍ବପ୍ରତତମମଳସ୍ତମ୍ଭନିବହଂ ।
ଭବାନ୍ ଦୃଷ୍ଟ୍ୱା ହେମୋଲ୍ଲିଖିତ ଦଶମସ୍କନ୍ଧଚରିତୋ
ଲ୍ଲସଦ୍ଭିତ୍ତିପ୍ରାନ୍ତଂ ମୁରବିଜୟିନଃ କେଳିନିଳୟଂ । ୪୬ ।

ଅଳିନ୍ଦେ ଯସ୍ୟାସ୍ତେ ମରକତମୟୀ ଯଷ୍ଟିରମଳା
ଶୟାଳୁର୍ଯାଂ ରାତ୍ରୌ ମଦକଳକଳାପୀ କଳୟତି ।
ନବାତଙ୍କସ୍ତସ୍ୟାଃ ଶିଖରମଧିରୁହ୍ୟ ଶ୍ରମନଦଂ
ପ୍ରତୀକ୍ଷେଥା ଭ୍ରାତର୍ବରମବସରଂ ଯାଦବପତେଃ । ୪୭ ।

ନିବିଷ୍ଟଃ ପଲ୍ୟଙ୍କେ ମୃଦୁଳତର ତୂଳୀ ଧବଳିତେ
ତ୍ରିଲୋକୀଲକ୍ଷ୍ମୀଣାଂ କକୁଦ ଦରସାଚୀକୃତତନୁଃ ।
ଅମନ୍ଦଂ ପୂର୍ଣ୍ଣେନ୍ଦୁପ୍ରତିମମୁପଧାନଂ ପ୍ରମୁଦିତୋ
ନିଧାୟାଗ୍ରେ ତସ୍ମିନ୍ ପ୍ରସ୍ୱତକଫୋଣିଦ୍ୱୟଭରଃ । ୪୮ ।

ଉଦଞ୍ଚତ କାଳିନ୍ଦୀ-ସଳିଳ-ସୁଭଗଂ ଭାବୁକରୁଚିଃ
କପୋଳାନ୍ତଃ-ପ୍ରେଙ୍ଖନ୍-ମଣି-ମକର-ମୁଦ୍ରାମଧୁରିମା ।
ବସାନଃ କୌଶେୟଂ ଜିତ-କନକଲକ୍ଷ୍ମୀପରିମଳଂ
ମୁକୁନ୍ଦସ୍ତେ ସାକ୍ଷାତ୍ ପ୍ରପଦ ସୁଧୟା ସେକ୍ଷ୍ୟତି ଦୃଶୌ । ୪୯ ।

ସ୍ୱବନ୍ଧୂ ପୌରାଣୀରଖିଳକୁଳବୃଦ୍ଧୋ ଯଦୁପତେ—
ରଦୂରଦାସୀନୋ ମଧୁର-ଭଣିତର୍ଗାସ୍ୟନ୍ତି ସଦା ।
ପୁରସ୍ତାଦାଖ୍ୟାସ୍ୟାଗଣେଭ୍ୟୁଦନାମା ସ କଠିନୋ
ମଣିସ୍ତମ୍ଭାଲମ୍ବୀ କୁତୂହଳକଥାଂ ସଙ୍କଳୟିତା । ୫୦ ।

ଛୟାଳିଶ

ଶିଖଣ୍ଡୋତ୍ତଂସଃ କଳିତ କୁରୁବର୍ମାପ୍ରଭୃତିଭିଃ
ସ୍ଫୁରଣ୍ଣେତ୍ୟେଚ୍ଛେ ବାଳବ୍ୟଜନଯୁଗଳାନ୍ଦୋଳନବିଧିଂ ।
ସଜାନୁଭ୍ୟାମସ୍ତାଦବ୍ଧୁବମବଷ୍ଟଭ୍ୟ, ଭବତା
ପୁରଃ ଶିଷ୍ୟୋ ନୂନଂ ପଦକମଳସମ୍ବାହନରତଃ । ୫୧ ।

ଶିବଙ୍ଗେନ୍ଦ୍ରୋ ଯୁଗ୍ମୀକୃତ-କରସରୋଜୋଦ୍ଭବ ପୁରଃ
କୃତାସଙ୍ଗୋ ଶ୍ରୀଶ୍ରୀ ବ୍ରଜବନନ ଦେଶେଽର୍ପିତମନାଃ ।
ଛଦଦ୍ଵନ୍ଦେ ଯସ୍ୟ ଧ୍ଵନତି ମଧୁରବାଶିବଷ୍ଟବୋ
ବ୍ରୂଦସ୍ୟନ୍ତେ ସାମାସ୍ଵର ଜନିତ ମନୋଽନ୍ୟ କଳହଂ । ୫୨ ।

ନ ନବକ୍ରଂ ଦାମୋଦର ପଦକନଷ୍ଟାଙ୍ଗୁଳନଖ—
ଦ୍ୟୁଷ୍ଟାନାଂ ଲବଣ୍ୟଂ ଭବତି ଚନ୍ଦ୍ରୁସେଦ୍ୟାଽପି ଚନ୍ଦ୍ରଃ ।
ତଥାପି ସ୍ତ୍ରୀ ପ୍ରଜ୍ଞାସୁଲଭ ତରଳତ୍ଵଦଧମସୌ
ପ୍ରକୃତ୍ୟା ତନ୍ଦ୍ରୀଂ ସ୍ତୁବତି ଚ ମହାସହାସବଶେ । ୫୩ ।

ଶିରଜନ୍ତେ ଯସ୍ୟ ବ୍ରଜ ଶିଶୁକୁଳାସ୍ତେପୁ ଶକଳ-
ସ୍ଫୁରନ୍ମୂର୍ଦ୍ଧାଗ୍ରୈର୍ଲୁଳିତଶିଖରାଃ ପାଦନଖରୈଃ ।
କ୍ଷଣଂ ଯାନାନ୍ନେକ୍ୟ ପ୍ରକଟପରମାନନ୍ଦଵିରସଃ
ସ ଦେବର୍ଷିର୍ମ୍ମୁକ୍ତାନପି ତନୁଭୃତଃ ଶୋଚତି ଭୃଶଂ । ୫୪ ।

ସରୋଜାନାଂ ବ୍ୟୂହଶ୍ରିୟମଭିନୟନ୍ ଯସ୍ୟପଦୟୋ-
ର୍ଯଶୌ ରଗାଢ୍ୟାନାଂ ଶଧିରମୁଦବାସବ୍ରତବିଧିଂ ।
ସ୍ଵମଂବନ୍ଦେ ମାତୈରନ୍ଧିତ ଶଧାନବ୍ୟସନତାଂ
ଯଦେଷ୍ଟା ପ୍ରାଣାନ୍ତଂ ଦମନମନୁବର୍ଷଂ ସ୍ଫୁରୟତି । ୫୫ ।

ସତତ୍ତ୍ୱଳଣ

ରୁଚ୍ଛନାମୁଲ୍ଲାସୈମରକତମୟସ୍ଥୂଳକଦଳୀ—
କଦମ୍ବାହଙ୍କାରଂ କବଳୟତି ଯସ୍ୟୋରୁ ଯୁଗଳଂ ।
ଯଦାଳାନସ୍ତମ୍ଭାଦ୍ୟୁତମବଲଲମ୍ବେ ବଳବତାଂ
ବଳାଦୁଦ୍‌ବାମାନାଂ ପଶୁପଗ୍ରାମଣୀ ଚିତ୍ତ,କରିଣାଂ । ୫୬ ।

ସଖେ ! ଯସ୍ୟାଙ୍ଘ୍ରିସ୍ଥାନସ୍ତନଶଫରଗାଙ୍ଗାବନବଧୌ
ଝଦାନଂ ଗାମ୍ଭୀର୍ଯ୍ୟ ଭ୍ରସରକଳିତା ନାଭିସରସୀ ।
ଯତଃ କଲ୍ପାଦୌ ସକଳଜନକୋତ୍ପତ୍ତି ବଢ଼ଘ୍ରା
ଗଷ୍ପରାନ୍ତଃ କକ୍ଷାଧୃତ ଭୁବନମମ୍ଭୋରୁହମଭୂତ୍ । ୫୭ ।

ଦ୍ୟୁଷ୍ଟିଂ ଧତ୍ତେ ଯସ୍ୟ ତ୍ରିବଳିଲତିକା ସକଂଠତରଂ
ସଖେ ଦାମଶ୍ରେଣୀ କ୍ଷପଣ ରଚନାଭଙ୍ଗମୁଦରଂ ।
ଯଶୋଦା ଯସ୍ୟାନ୍ତ ସୁରନରଭୁଜଙ୍ଗୈଃ ପରିବୃତଂ
ମୁଖ ଦ୍ୱାରବାରଦ୍ୱୟମବଲ୍ଲୋକେ ତ୍ରିଭୁବନମ୍ । ୫୮ ।

ଉରୋ ଯସ୍ୟ ସ୍ଫାରଂ ସ୍ଫୁରତି ବନମାଳା ବଳୟିତଂ
ଶତଦ୍ୱାନ ତନ୍ୱୀ ଜନମନସି ସଦ୍ୟୋମନସିଜଂ ।
ନଖଶ୍ରେଣର୍ନାପି ନ୍‌ରବଙ୍କବନ୍ଧତୁଲ୍ୟୋଽପି ବହତେ
ସଦା ଖଦ୍ୟୋତାଭ୍ରଂ ଭୁବନମଧୁରଃ କୌସ୍ତୁଭମଣିଃ । ୫୯ ।

ସମନ୍ତାଦୁନ୍ମୀଲଦ୍ ବଳଭିଦୁପଳସ୍ତମ୍ଭଯୁଗଳଂ
ପ୍ରଭାଜୈତ୍ରଂ କେଶିଦ୍ୱିଜଦଳିତ କେୟୂର,ଲଳିତଂ ।
ମଦକ୍ଲାମ୍ୟଦ୍‌ଗୋପୀପଟଳ-ହଠକଣ୍ଠ ଗ୍ରହତାରଂ
ଭୁଜଦ୍ୱନ୍ଦ୍ୱଂ ଯସ୍ୟ ସ୍ଫୁଟ. ସୁରଭିଗନ୍ଧଂ ବିଜୟତେ । ୬୦ ।

ଅଠରଲକ୍ଷ

ଜିନ୍ୱତେ ସାମ୍ରାଜ୍ୟଂ ଜଗତି ନବଲାବଣ୍ୟଲହରୀ-
ପରୀପାକସ୍ୟାନ୍ତର୍ମୃଦୁ ସ୍ମିତମଦନାବେଶ ମଧୁରଂ ।
ନଟଦ୍ଭ୍ରୂବଲ୍ଲୀକଂ ସ୍ମିତନବସୁଧା-କେଳିସଦନଂ
ସ୍ଫୁରନ୍ ମୁକ୍ତା ପଂକ୍ତିପ୍ରତିମରଦନଂ ଯସ୍ୟ ବଦନଂ । ୬୧ ।

କମେଭିର୍ବ୍ୟାହାରୈଃ କଲୟୁକଥୟାମି ସ୍ଫୁଟମହଂ
ସଖେ ! ନିଃସନ୍ଦେହଂ ପରିଚୟପଦଂ କେବଳମିଦଂ ।
ପରାନନ୍ଦୋ ଯସ୍ମିନ୍ ନୟନପଦବୀଭ୍ରାଜି ଭବିତା
ତ୍ୱୟା ବିଜ୍ଞାତବ୍ୟୋ ମଧୁରରବ ! ସୋଽୟଂ ମଧୁରିପୁଃ । ୬୨ ।

ଛଲେଲ୍କେଥାଃ କୃଷ୍ଣଂ ନଦକଳମରାଳୀ- ରତିକଳା-
ବିମୁଗ୍ଧବ୍ୟାମୁଗ୍ଧଂ ଯଦୁପୁରବଧୂ ବିଭ୍ରମଭରୈଃ ।
ତଦାନାସ୍ମାନ୍ ଗ୍ରାମ୍ୟାନ୍ ଶ୍ରବଣ ପଦବୀଂ ତସ୍ୟ ଗମୟେଃ
ସୁଧାପୂର୍ଣ୍ଣଂ ଚେତଃ କଥମପି ନ ତତ୍ତ ମୃଗୟସେ । ୬୩ ।

ଯଦା ବୃନ୍ଦାରଣ୍ୟସ୍ଫୁରଣଲହରୀ ହେତୁରମଣଂ
ପିକାନାଂ ବେବେଷ୍ଟି ଧ୍ରୁତିହରରତିମୁକ୍ତୈଃ କୁହୁରୁତଂ ।
ବହନ୍ତେ ବା ବାତଃ ସ୍ଫୁରତି ଗିରିମଲ୍ଲୀ-ପରିମଳ
ସ୍ତଦେବାସ୍ମାକୀନାଂ ଗିରମୁପହରେଥାଃ ମୁରଭିଦି । ୬୪ ।

ପରାତେଷ୍ଟାନ୍ ଗୋଷ୍ଠାନ୍ନିଖିଳରମଣୀଭ୍ୟଃ ପ୍ରିୟତୟା
ଭବାନ୍ ଯସ୍ୟା ଗୋପୀରମଣ ବଦଧେ ଗୌରବଭରଂ ।
ସଖୀ ତସ୍ୟା ବିଜ୍ଞାପୟତି ଲଳିତା ଧୀରଲଳିତା
ପ୍ରଣମ୍ୟ ଶ୍ରୀପାଦାମ୍ବୁଜ-କନକପୀଠୀ-ପରିସରେ । ୬୫ ।

ଅଣରୁଣ

ପ୍ରତ୍ୟୂଷାଦାବାଲ୍ୟଂ ନବକମଳିନୀ-ପଲ୍ଲବକୁଳୈ-
ସ୍ମୃତ୍ୱା ଭୂୟୋ ଯସ୍ୟାଃ କୃତମଧୁହ ! ସମ୍ବର୍ଦ୍ଧନମଭୂତ୍ ।
ତ୍ୱଦ୍ଗନ୍ଧୋଦ୍‌ଗାରସ୍ଫୁରଣ ପରମାନନ୍ଦଜନନା
ବଭୂବ ପ୍ରଷ୍ଠୌହୀ ସ୍ମରମଥନ ସେୟଂ କପିଳିକା । ୬୬ ।

ସମୀପେ ନୀପାନାଂ ସ୍ଥିତଚତୁରଦଳା ହସ୍ତଗମିତା
ତ୍ୱୟା ଯା ମାକନ୍ଦ ପ୍ରିୟସହଚରୀ ଭାବନଯୁକ୍ତିଃ ।
ଇୟଂ ସା ବାସନ୍ତୀ ଗଳଦମଳମାଧ୍ୱୀକ ପଟଳୀ-
ମିଷାଦଗ୍ରେ ଗୋପୀରମଣ ! ରୁଦତୀ ରୋଦୟତି ନଃ । ୬୭ ।

ପ୍ରସୂତୋ ଦେବକ୍ୟା ମଧୁମଥନ ଯଃ କୋଽପି ପୁରୁଷଃ
ସ ଯାତୋ ଗୋପାଳାଭ୍ୟୁଦୟ ପରମାନନ୍ଦବସତିଂ ।
ଧୃତୋ ଯୋ ଗାନ୍ଧିନ୍ୟାଃ କଠିନ ଜଠରେ ସମ୍ପ୍ରତି ତତଃ
ସମନ୍ତାଦେବାସ୍ତଂ ଶିବଶିବ ଗତା ଗୋକୁଳକଥା । ୬୮ ।

ଅରିଷ୍ଟେନାକ୍ରାନ୍ତଃ ପଶୁପସୁଦୃଶୋ ଯାନ୍ତୁ ଶରଣଂ
ତୃଣାବର୍ତ୍ତଧ୍ୱାନ୍ତୋ ରଚୟତି ଭୟଂ ତତ୍ପରତୟା ।
ଅସୌ ବ୍ୟୋମୀଭୂତା ବ୍ରଜବସତିଭୂମୀପରିସରା
ବହନ୍ତେ ସନ୍ତୋଷଂ ମୁରହର ! ସୁଦୂରଂ ତ୍ୱୟି ଗତେ । ୬୯ ।

ତ୍ୱୟା ନାଗନ୍ତବ୍ୟଂ କଥମପି ହରେ ! ଗୋଷ୍ଠମଧୁନା
ଲତାଶ୍ରେଣୀ ବୃନ୍ଦାବନଭୁବି ଯତୋଽଭୂଦ୍ବିଷମୟୀ ।
ପ୍ରସୂନାନାଂ ଗନ୍ଧଂ ମଧୁମଥନ ! ତଦ୍ବାତନିହତଂ
ଭଜନ୍ ସଦ୍ୟୋମୂର୍ଚ୍ଛାଂ ବହତି ନିବହୋ ଗୋପସୁଦୃଶାଂ । ୭୦

ପଞ୍ଚଶ

କଥଂ ସଙ୍ଗୋଽସ୍ମାଭିଃ ସହସାମୁଚିତଃ ସମ୍ପ୍ରତି ହରେ
ବୟଂ ଗ୍ରାମାନାର୍ଯ୍ୟାସ୍ତ୍ୱମପିନୃପକନ୍ୟାର୍ଚ୍ଚିତପଦଃ ।
ଗତଃ କାଲୋ ଯସ୍ମିନ୍ ପଶୁପରମଣୀ-ସଙ୍ଗମକୃତେ
ଭବନ୍ ବ୍ୟଗ୍ରସ୍ତସ୍ଥୌ ତମସିଗୃହବାଟୀ-ସ୍ଥପିନଃ । ୭୧ ।

ବୟଂ ତ୍ୟକ୍ତ୍ୱା ସ୍ୱାମିନ୍ ! ଯଦିହ ତବ କଂ ଦୂଷଣମିଦଂ
ନିସର୍ଗଃ ଶ୍ୟାମାନାମୟମତିତରାଂ ଦୁଷ୍ପରିହରଃ ।
କୁହୂକଣ୍ଠୈରଣ୍ଡାବଧିସହନବାସାତ୍ ପରିଚିତା
ବିସୃଜ୍ୟନ୍ତେ ସଦ୍ୟଃ କଳିତନବପକ୍ଷୈର୍ବଳଭୂଜଃ । ୭୨ ।

ଅୟଂ ପୂର୍ବୋରଙ୍ଗଃ କିଲ ପରିଚିତୋ ଯସ୍ୟ ତବ ସା
ରସାଦାଖ୍ୟାତବ୍ୟଂ ପରିକଳୟ ତନ୍ନାଟକମିଦଂ ।
ମୟା ପ୍ରଷ୍ଟବ୍ୟୋଽସି ପ୍ରଥମମିତି ବୃନ୍ଦାବନପତେ !
କିମାଦ୍ୟୋ ରାଧେତି ସ୍ମରସି ହତ ! କଂ ବର୍ଣ୍ଣଯୁଗଳଂ । ୭୩ ।

ଅୟେ କୁଞ୍ଜଦ୍ରୋଣୀକୁହରଗୃହମେଧୀନ୍ କିମଧୁନା
ପରୋକ୍ଷଂ ବକ୍ଷ୍ୟନ୍ତେ ପଶୁପରମଣୀ ଦୁର୍ନିୟୁତୟଃ ।
ପ୍ରବୀଣା ଗୋପୀନାଂ ତବଚରଣ-ପଦ୍ମେଽପି ଯଦିୟଂ
ଯଯୌ ରାଧା ସାଧାରଣ ସମୁଚିତପ୍ରଶ୍ନପଦବୀଂ । ୭୪ ।

ମୟା ବାଚ୍ୟଃ କିଂବା ତ୍ୱମିହ ନିଜଦୋଷାତ୍ ପରମସୌ
ଯଯୌ ମନ୍ଦା ବୃନ୍ଦାବନକୁସୁମବନ୍ଧୋ ! ବିଧୁରତାଂ ।
ଯଦର୍ଥଂ ଦୁଃଖାର୍ଚ୍ଚିର୍ବିକଶତି ତମଦ୍ୟାପି ହୃଦୟା
ନ ଯସ୍ମାଦ୍ଦୁର୍ମେଧାନରମପି ଭବନ୍ତଂ ଦରୟତି । ୭୫ ।

ତରଙ୍ଗୈଃକୁର୍ବାଣାଂ ଶମନଭଗିମାଲ୍ୟଧବମସୌ
ନଦୀ କାଞ୍ଚିଦ୍ ଗୋଷ୍ଠେ ନୟନଜଳପୂରୈରଜନୟତ୍ ।
ଇଷ୍ଟବାସ୍ୟାଦ୍ଦ୍ୱେଷାଦ୍ ବରମିହଦଶାଂ ପ୍ରାର୍ଥନମୟୀଂ
ମୁରାରେ ବିଜ୍ଞପ୍ତିଂ କ୍ଷଣମୟତି ମାମା ଚ ଶମନଃ ୭୬ ।

କୃତା କୁବ୍ଜକ୍ରୀଡ଼ା କମପି ତବରୂପଂ ମମ ସଖୀ
ସକୃଦ୍ଦୃଷ୍ଟ୍ୱା ଦୂରାଦହିତହିତବୋଧୋଜ୍ଝିତମତିଃ ।
ହତାସେୟଂ ପ୍ରେମାନଳମନୁବିଶନ୍ତୀ ସରଭସଂ
ପତଙ୍ଗୀବାତ୍ମାନଂ ମୁରହର ! ମୁହୁର୍ଦ୍ଦାହିତବତୀ । ୭୭ ।

ବସନ୍ତେ ବାସନ୍ତୀ ମୃଦୁମଧୁରକାନ୍ତ୍ୟର୍ବିତନୁତେ
ସମୁଚ୍ଛନ୍ନଂ ଛନ୍ନଂ ହରିବରହିଣୀ ଚଣ୍ଡମଦନମ୍ ।
ପ୍ରସୂନୈରାକୀର୍ଣ୍ଣଂ ରୁଚିରରୁଚିବୃନ୍ଦାବନମିଦଂ
ବିଲୋକ୍ୟୈନଂ କାଳଂ କଥମିହ କୃଶାଙ୍ଗୀ ବିଗମୟେତ୍ । ୭୮ ।

ନିବନ୍ଧାଃହୋ ଧନ୍ୟା ହୃଦୟମିବତେ ସ୍ୱଂ ପୁରମସୌ
ସମାସାଦ୍ୟ ସ୍ୱୈରଂ ଯଦିହ ବିଳସନ୍ତୀ ନିବସତି ।
ଧ୍ରୁବଂ ପୁଣ୍ୟଭ୍ରଂଶାଦଜନି ସରଲେୟଂ ମମ ସଖୀ
ପ୍ରବେଶସ୍ତତ୍ରାଭୂତ୍ କ୍ଷଣମପି ଯଦସ୍ୟ ନ ସୁଲଭଃ । ୭୯ ।

କମାବସ୍ଥାଭୂତୈଃ ସପଦି ଯଦିବା କ୍ରୂରଫଣିନା
କ୍ଷତାପସ୍ମାରେଣ ଚ୍ୟୁତମତିରକସ୍ମାତ୍ କମପତତ୍ ।
ଇତି ବ୍ୟଗ୍ରୈରସ୍ୟାଂ ଗୁରୁଭିରଭିତଃ କୀଚକରବ—
ଶ୍ରବାଦସ୍ପନ୍ଦାୟାଂ ମୁରହର ! ବିକମ୍ପା ବିଦଧିରେ । ୮୦ ।

ନଖାନେନସ୍ମଂ ସମଜନ୍ୟକୁଶଳପଶ୍ଚାପାକଲଷ୍ଟସ୍ୟ
ନଶ୍ୟନ୍ତି ସ୍ୱୈରଂ ମମ ସନ୍ତତସ୍ୟ ଚିନ୍ତାକୁହରେ ।
ଜଗନ୍ନେତ୍ର ଶ୍ରେଣୀ ମଧୁର ମଥୁରାସ୍ଥାଂ ନିବସତ —
ସ୍ଥିରବାର୍ତ୍ତା ବାର୍ତ୍ତାମପି ତବ ସନ୍ଦେଶାଂ ନ ଲଭତେ । ୮୧ ।

ଜନାନ୍ ମିଥ୍ୟାଦେଶାନ୍ ନମନ୍ତି ଭଜତେ ମାନ୍ତ୍ରିକଣାନ୍
ବିଧତ୍ତେ ଶୁଶ୍ରୂଷାମଧିକଜନପୈର୍ଦୌଷଧବାଦଂ ।
ଲୁଧକ୍ଷା-ଦାକ୍ଷାଦ୍ୟୈ ପରିଚରନ୍ତି ଭକ୍ତ୍ୟା ଗିରିସୁତାଂ
ମମାଖ୍ୟା କ୍ୱ ବ୍ୟଗ୍ରା କମପି ଶୁଭହେତୁଂ ନ ମନୁତେ । ୮୨ ।

ପଶୂନାଂ ପାତାରଂ ଭୁଜଗରିପୁପକ୍ଷପ୍ରଣୟିନଂ
ସୁରେନ୍ଦ୍ରବର୍ହିଂକ୍ରୀଡ଼ଂ ନିବଡ଼ଘନସାର-ଦ୍ୟୁତିହରଂ ।
ସଦାଭ୍ୟର୍ଣ୍ଣେ ନନ୍ଦୀଶ୍ୱରଗିରିଭୁବୋରଙ୍ଗରସିକଂ
ଭବନ୍ତଂ କଂସାରେ ! ଭଜତି ଭବଦାପ୍ତ୍ୟୈ ମମସଖୀ । ୮୩ ।

ଭବନ୍ତଂ ସନ୍ତପ୍ତାବଦଳିତ-ତମାଳାଙ୍କୁର-ରସୈ —
ର୍ବିଲିଖ୍ୟ ଭ୍ରୂଭଂଗୀକୃତମଦନକୋଦଣ୍ଡ କଦନଂ ।
ନିଧାସ୍ୟନ୍ତ କଣ୍ଠେ ତବ ନିଜ ଭୁଜାବଲ୍ଲିରମସୌ
ଧରଣ୍ୟାମୁନ୍ମିଳାଙ୍କତମ-ନିଟଡ଼ାଙ୍ଗୀ ବିଲୁଠନ୍ତି । ୮୪ ।

କଦାଚିତ୍ ମୂର୍ଚ୍ଛେସ୍ମିଂ ନିବଡ଼ ଉଦୟାସ୍ତୁ-ସ୍ତମିତା —
ଦମନ୍ଦାଦାମ୍ନାନଂ କଳୟନ୍ତି ଭବନ୍ତଂ ମମ ସଖୀ ।
ତଥାପ୍ୟସ୍ୟବାଧାବିରହ-ଦହନା କଳ୍ପିତଧିୟୁ ।
ମୁରାରେ ଦୁଃସାଧା କ୍ଷଣମପି ନ ବାଧା ବିରମତି । ୮୫ ।

ଚେପନ

ଲବ୍ଧ୍ୱା ସନ୍ତାପାନାମୁପରି ପରିମୁକ୍ତାପିରଭସା—
ସ୍ୱଦାମାମାପେଦେ ତଦପି ତବ ଚେଷ୍ଟାଂ ପ୍ରିୟସଖୀ ।
ଯଦେଷାଂ କଂସାରେ ! ଭଙ୍ଗୁର-ହୃଦୟଂ ତ୍ୱାମବସୃତ
ସନ୍ତାନାଂ ମୂର୍ଦ୍ଧନ୍ୟା ଭଙ୍ଗୁରହୃଦୟା ଭୁତନନ୍ଦନଂ । ୮୬ ।

ସମକ୍ଷଂ ସର୍ବେଷାଂ ସ୍ୱହରସି ସମାଧିପ୍ରଣୟିନା—
ମିତ ଶ୍ରୁତ୍ୱା ନୂନଂ ଗୁରୁତର-ସମାଧିଂ କଳୟନ୍ତି ।
ତଦା କଂସାରାତେ ! ଭଜନ୍ତି ଯମିନାଂ ନେହପଦବୀ
ମିତବ୍ୟକ୍ତଂ ସଜ୍ଜୀଭବତି ଯମମାଲ୍ଲୋଚନ୍ତୁମପି । ୮୭ ।

ମୁରରେ ! କାଳନ୍ଦୀ ସଳିଳଦଳଦର୍ଦ୍ଦବରରୁଚେ !
ମୁକୁନ୍ଦ ! ଶ୍ରୀବୃନ୍ଦାବନମଦନ ! ବୃନ୍ଦ ରକମଣେ !
ବ୍ରଜାନନ୍ଦନ୍ମନ୍ଦୀଶ୍ୱରଦୟିତ ! ନନ୍ଦାତ୍ମଜ ! ହରେ !
ସଦେହନ୍ତି ନନ୍ଦନ୍ତି ପରିଜନଶୁଚଂ କନ୍ଦଳୟତି । ୮୮ ।

ସମନ୍ତାଦୁତ୍ପ୍ରସ୍ତବ-ବରଦହ୍ୱାବାଗ୍ନି-ଶିଖୟା
କୃତୋଦ୍‌ବେଗଃ ପଞ୍ଚାଶୁଗ ମୃଗୟୁବେଧବ୍ୟନ୍ତକରୈଃ ।
ତନୂଭୂତଃ ସଦ୍ୟସ୍ତନ ବନମିଦଂ ହାସ୍ୟନ୍ତି ହରେ !
ହଠାଦଦ୍ୟ ଶ୍ୱୋ ବା ମମ ସହଚରୀ ପ୍ରାଣହରଣଃ । ୮୯ ।

ଯସ୍ମୋରଶିଷ୍ଟୀତନ୍ଦ୍ରି ଷି ହ୍ନମକରୋତ୍ତଂସ ମଧ୍ୱରେ
ଦଧାନେ ହୃଗ୍‌ଭଙ୍ଗ୍ୟା ସ୍ମରବ୍ୱଜୟିରୂପଂ ମମ ସଖୀ ।
ହରେ ଦତ୍ତ୍ୱାନ୍ତା ଭବତି ତଦିମାଂ କଂ ପ୍ରଭବତି
ସ୍ମରେ ହନ୍ତୁଂ କନ୍ତ୍ର ବ୍ୟଥୟନ୍ତି ଭବାନେବ କୁତୁକୀ । ୯୦ ।

ତଉବନ

ନ ଜାନୀଷେ ଧ୍ରୁବଂ ପଶୁପରମଣୀନାଂ ଯଦୁମଣେ !
ନ ଜାନୀମଃ କସ୍ମାତ୍ତଦପି ଚବମାସ୍ଥା ରଚୟନ୍ତି ।
ସମନ୍ତା'ଦଧାମ୍ନଂ ଯଦିହ ପବନବ୍ୟାଧିରଲପା—
ଦଳାଦସ୍ୟାସ୍ତେନ ବ୍ୟସନକୁଳମେବ ଦ୍ୱିଗୁଣିତଂ । ୯୧ ।

ଗୁରୋରନ୍ତେବାସୀ ସ ଭବତି ଯଦୂନାଂ ସଚିବତାଂ
ସଖୀପୁଂ କାଳିନ୍ଦୀ କଳ ଭବତି କାଳସ୍ୟ ଭଗିନୀ ।
ଭବେଦନ୍ୟଃ କୋବା ନରପତିପୁରେ ମତ୍ ପରିଚିତୋ
ଦଶାମସ୍ୟାଃ ଶଂସନ୍ ଯଦୁତିଳକ ! ଯସ୍ତ୍ୱାମନୁନୟେତ୍ । ୯୨ ।

କ୍ଷଣୀଣ୍ତାଙ୍ଗୀ ମନ୍ଦବଂଶବଲୁଠନାଦୁତ୍କଳକପୁ।
ପଶାଡାଂ ଭୂଯୁସ୍ୟା ସତତମସ୍ରଗବ୍ୟନ୍ତକସାଂ ।
ପରିଧ୍ୱସ୍ତାମୋଦାଂ ଶ୍ୱରମିତ ସମସ୍ତାଳ କୁଟ୍ଟକାଂ
ଶ୍ୱଧୋ ! ପାଦସ୍ପର୍ଶାଦପି ସୁଖୟ ରାଧା-କୁମୁଦିନୀଂ । ୯୩ ।

ଶ୍ୱପତ୍ତିଭ୍ୟଃ ପ୍ରାଣାନ୍ କଥମପି ଭବନ୍-ସଙ୍ଗମ ସୁଖ—
ସ୍ପୃହାଧୀନା ଶୌରେ ! ମମ ସହଚରୀ ରକ୍ଷିତବତୀ ।
ଅତନ୍ଦ୍ରାନ୍ତେ ସଂପ୍ରତ୍ୟବଧିଦିବସେ ଜୀବନଶ୍ୱଧୌ
ହତାଶା ନିଃଶଙ୍କଂ ଶ୍ୱଚରତି ଦୃଶୌ ଚଞ୍ଚ ମୁକୁଳେ ।

ପ୍ରଷ୍ଟିକାଗରମ୍ଭଶ୍ଲଥମଣିଭରୁଦ୍ୟତ୍ ପରିଣତେ—
ବିମୁକ୍ତାସୁ ବ୍ୟକ୍ତ ସ୍ମରକଦନଶ୍ୱାଜଃ ପରିଜନୈଃ ।
ଅମୁଞ୍ଚନ୍ତୀ ସଙ୍ଗଂ କୁବଳୟଦୃଶଃ କେବଳମସୌ
ବଳାଦଦ୍ୟ ପ୍ରାଣାନବତି ଭବଦାଶା ସହଚରୀ । ୯୫ ।

ଅୟେ ରସକ୍ରୀଡ଼ାରସିକ ! ମମ ସଖ୍ୟାଂ ନବନବା—
ପୁରାବଦ୍ଧା ଯେନ ପ୍ରଣୟଲହରୀ ହନ୍ତଗହନା ।
ସ ଚେନ୍ମୁକ୍ତାପେକ୍ଷସ୍ତ୍ୱମପିଧିଗିମାଂ ତୂଳଶକଳଂ
ଯଦେତସ୍ୟ ନାସାଦ୍ୱନ୍ୱିତମିଦମଦ୍ୟାପି ଚଳତି । ୯୬ ।

ମୁକୁନ୍ଦ ! ଭ୍ରାନ୍ତାକ୍ଷୀ କିମପି ଯଦସଙ୍କଳ୍ପିତଶତଂ
ବ୍ୟଧତ୍ତେ ତଦ୍ୱକ୍ତୁଂ ଜଗତି ମନୁଜଃ କଃ ପ୍ରଭବତି ।
କଦାଚିତ୍ କଲ୍ୟାଣୀ ବିଜପତି ଯଦୁତ୍କଣ୍ଠିତମତି—
ସ୍ତଦାଖ୍ୟାମି ସ୍ୱାମିନ୍ ! ଗମୟ ମକରୋତ୍ତଂସ-ପଦବୀଂ । ୯୭ ।

ଅଭୂଦ୍ଭୁକ୍ତୋଽପି ପ୍ରେମାମ୍ବୁ ମୃତଶୟୋର୍ଥଃ ସଖିପୁରା
ପରଂ ଧର୍ମ୍ୟାପେକ୍ଷାମସିତଦବଲମ୍ବ୍ୟନ୍ତରଣସୂତ୍ ।
ତଦିଦାନୀଂ ହା ଧିକ୍ ସମଜନି ତଟସ୍ଥଃ ସ୍ଫୁଟମହଂ
ଭଜେ ଲଜ୍ଜାଂ ଯେନ କ୍ଷଣମପି ପୁନର୍ଜୀବିତୁମପି । ୯୮ ।

ଗରୀୟାନ୍ମେ ପ୍ରେମା ତ୍ୱୟି ପରିମିତ ସ୍ନେହଲଘୁତା
ନ ଜାନିଷ୍ୟାମିତ୍ଥ ପ୍ରଣୟଗରିମାଖ୍ୟାପନବିଧିଃ ।
କଥଂ ନାୟାସୀତି ସ୍ମରଣ ପରିପାଟୀ-ପ୍ରକଟନଂ
ହରୌ ସନ୍ଦେଶାୟ ପ୍ରିୟସଖି ! ନମେ ବାଗବସରଃ । ୯୯ ।

ଅମୀକୁଞ୍ଜାଃ ପୂର୍ବାମମଳ ଦଧିରେ କାମପିମୁଦଂ
ଦ୍ରୁମାଣୀୟଂ ଚେତଃ ସଖିନ କତିଶେ ନନ୍ଦତବଷ୍ଟି ।
ଇଦାନୀଂ ପର୍ଯ୍ୟେତେ ଯୁଗପଦୁପତାପଂ ବିଦଧତେ
ପ୍ରଭୌ ମୁକ୍ତାପେକ୍ଷେ ଭଜତି ନ ହି କୋ ବା ବିମୁଖତାଂ । ୧୦୦

---

ମୁଦ୍ରାକର—ଶ୍ରୀଦିବାକର ମିଶ୍ର, ଗୋସ୍ୱାମି ପ୍ରେସ, କଟକ-୨



# ଦରଦୀକବି

ଜନ୍ମ—୩୧-୧-୧୯୩୦—ଜନ୍ମସ୍ଥାନ-କଳନାଦନୀ 'ବିରୂପା' ତଟବର୍ତ୍ତୀ ଐତିହାସିକ ପୀଠ ଚଉଦ୍ୱାର, ଜି: କଟକ—ପିତାମହ ତଥା ବାଲ୍ୟଗୁରୁ ସ୍ୱର୍ଗତ ପଣ୍ଡିତ କୃପାସିନ୍ଧୁ କରଙ୍କର ବାତ୍ସଲ୍ୟ ସ୍ନେହରେ ଲାଳିତପାଳିତ—ପିତାମହଙ୍କର ମୃତ୍ୟୁ ପରେ ଦାରିଦ୍ର୍ୟର ତୀବ୍ର କଷାଘାତରେ କ୍ଷୁବ୍ଧ ଜୀବନ ଜର୍ଜରିତ—ଯୁବତୀପ୍ରିୟାର ସାମୟିକ ବିରହରେ ହୃଦୟର ପ୍ରେମ-ଫଲ୍‌ଗୁ ବିରହ-ବାନ୍ଧବୀ କବିତାବଳୀ ମାଧ୍ୟମରେ ପ୍ରବାହିତ—ସମଗ୍ର ଭାରତ, ସିଂହଳ, ଭୂସ୍ୱର୍ଗ କାଶ୍ମୀର ଓ ନେପାଳ ପରିଭ୍ରମଣ ।

ପ୍ରକାଶିତ ପୁସ୍ତକାବଳୀ:– ବିରହ-ବାନ୍ଧବୀ, ମିଳନ-ମାଧୁରୀ, ରତ୍ନରେଣୁ, ପଲ୍ଲୀ-ପ୍ରୀତି, ଉରୁସହାର, ନୀତି-ନିର୍ଝରିଣୀ, ସଂସାର ଶାନ୍ତି, ସଟୀକ ଯମକରାଜ ଚଉତିଶା, ଗୀତଗଣିତ, ଅଞ୍ଚଳ, ମଣିରତ୍ନମାଳା, ଉଳଟଣ୍ଡୁଳ ଓ ହଂସଦୂତ ।

ମୁଦ୍ରଣ ପ୍ରତୀକ୍ଷାରେ:—ପଥ ଓ ପଥିକ, ନୀଳୋଦୟ ଓ କଳ୍ପନା କୁଞ୍ଜେ କବି